# କ୍ଷଣିକା

ଶ୍ରୀ ନିତ୍ୟାନନ୍ଦ ମହାପାତ୍ର

ପ୍ରକାଶକ

ଭାରତୀ ଭବନ

ପୁରୀ

# ଉତ୍ସର୍ଗ

ସ୍ନେହର ମିଚ୍ଛେଲ୍,

ତୁ ମିଛ କହ, ସତ କହ, ମୁଁ ତାକୁ ସତ ମଣିଛି ବୋଲି ତୁ ମୋତେ ଏତେ ସହଜରେ କ୍ଷଣିକ ଭିତରେ ସାରା ଜୀବନ ପାଇଁ କନ୍ଦେଇ ଦେଇ ପାରିଲୁ ।

ଲକ୍ଷ ଜୀବନର କ୍ଷଣି କ୍ଷଣର ଅନୁଭୂତିକୁ ନିଜ ଛାତି ଉପରେ ପକାଇ ମୁଁ ସହାନୁଭୂତି ଦେଇ ଯାହା ଲେଖିଛି, ସେସବୁ ତୋର ନହୋଇ ଆଉ କା'ର ହେବ ।

ତୋର

କେହିନୁହେଁ

ଭିକାରୀଟି ନିତ ନିତି ଆସେ । ଗୃରଅଡ଼ୁ ବୁଲି ବୁଲି ଅନ୍ତ ଶେଷରେ ଏଇ କୁଟୀର ଦୁଆରରେ ଥାଳ ପାତିଦିଏ । ସୁକୁମାରୀ ଗୋଟିଏ କୁମାରୀ ଅଞ୍ଜଳି ଭରି ଭିକ ଦେଇଯାଏ । ତାର ଥାଳ ପୂର୍ଣ୍ଣ ହୋଇଯାଏ । ସେତିକିରେ ।

ଭିକାରୀ ଚାଲିଯାଏ । ଶେଷଥର ପାଇଁ ଚପଳା ବାଳିକାର ଦୟାବିମଳ ମୁଖମଣ୍ଡଳକୁ ଚାହିଁ ଦେଇ ସେ ଫେରିପଡ଼େ । ଭିକ୍ଷାରେ ଯେମିତି ଗୋଟାଏ ତୃପ୍ତି ଅଛି । ସେ ତୃପ୍ତି ଭିକ୍ଷା ମାଗିବାର ଯଥାର୍ଥତାରେ ନୁହେଁ, ଭିକ୍ଷା ଦେବାର ସାର୍ଥକତାରେ ପୂର୍ଣ୍ଣ ହୁଏ ।

ଦିନ ପରେ ଦିନ ବିତିଯାଏ—ଏମିତି । ଭିକାରୀ ଦୁଆର ଆଗରେ ଆସି ଠିଆ ହୁଏ । ଏକତାରାରୁ ଝଙ୍କାର ଉଠିବାକ୍ଷଣି ଅନ୍ନପୂର୍ଣ୍ଣାର ଚିତ୍ତ ଚଞ୍ଚଳ ହୋଇ ଉଠେ । ଭିକାରୀର ମଧୁର ଭଜନ ଶୁଣୁଶୁଣୁ କୁମାରୀ ଗୋଟିଏ ସୁନା ରାଇଜର ସପନ ଦେଖେ। ଭିକାରୀର ଥାଳୀରେ ଚାଉଳ ଅଜାଡ଼ିଦେଇ ସେ ଭିକାରୀର ମୁହଁକୁ ଅନାଇ ରହେ । ଭିକାରୀ ଯାହା କହେ ସେ ସବୁ ବୁଝେ, ଯାହା ନ କହେ ତା'ବି ।

ଅନେକଦିନ ଚାଲିଗଲା । ଭିକାରୀ ଆସି ପାରୁନଥିଲା । ସେଦିନ ସେ କୁଟୀର ଦ୍ୱାରରେ ଆସି ଠିଆ ହେଲା । ଖୁବ୍ ଧୀରେ

ଧୀରେ ସେ ଗୀତ ଆରମ୍ଭ କଲା । ଭାବୁଥିଲା, କୁମାରୀ ଆସି ଅଭିମାନ କରିବ, 'ଏତେଦିନ କେଉଁଠି ଥିଲ ରେ ପାଗଳ !' ସେ ତା'ର କି ଉତ୍ତର ଦେବ ? ସେ ଉତ୍ତର ଦେବ ତାର ଏଇ ଗୁଞ୍ଜରିତ ସଙ୍ଗୀତରେ । ସେ ଗାଇବାକୁ ଲାଗିଲା । କ୍ଷମା ପାଇବାପାଇଁ ତା' ହୃଦୟ ସତେ ଯେମିତି ଆତୁର ହୋଇ ଉଠୁଥିଲା । ସେ ଚିତ୍କାର କରି ଉଠିଲା । ସଙ୍ଗୀତର ସ୍ୱର ଯେପରି ଭୁଲାଇ ଭୁଲାଇ କାହାକୁ ଡାକୁଛି । ମନେ ହେଲା ଗଛପତ୍ର ଯେମିତି ଥରି ଉଠୁଛି ସେ ଆର୍ତ୍ତ ନାଦରେ, କିନ୍ତୁ ମଣିଷର ଶବ୍ଦ ବର୍ଣ୍ଣ ନଥିଲା । କେହି ଶୁଣିଲେ ନାହିଁ ତା' ଗୁହାରି । ତା' ହୃଦୟ ଠିକ ଠିକ ହୋଇ ଝଡ଼ି ପଡ଼ୁଥିଲା, ତଥାପି କେହି ଶୁଣିଲେ ନାହିଁ ।

ସେଇଦିନଠୁ ଭିକାରୀ ଘର ଛାଡ଼ିଲା, ଗ୍ରାମ ଛାଡ଼ିଲା, ଦାର-ଦୁଆରେ ଘୂରି ବୁଲିଲା ଶରେଖ ଜଳ ପ୍ରାପ୍ୟେ ତା'ର ଅନ୍ୱେଷଣରେ । ଦିନ ଯାଏ ରାତି ଆସେ, ରାତି ଯାଏ ଦିନ ଆସେ, ଖିଆ ନାହିଁ, ପିଆ ନାହିଁ, ଶୁଆ ନାହିଁ, ବସା ନାହିଁ ଭିକାରୀ ଖୋଜି ବୁଲୁଥାଏ କାହିଁ ତାର ଅନ୍ନପୂର୍ଣ୍ଣା ! ତା' ଭିତରଟା ଶୋଷିଲା ପଥିକ ଭଳିଆ ହାଏ ହାଏ କରି ଉଠେ । ଆପଣାର ଅବଶ ଚରଣକୁ ଆପଣା ହାତରେ ଆଉଁସି ଆଉଁସି କେତେବେଳେ ଟିକିଏ ଥକା ମାରେ । କାହାର ଅଇଣ୍ଠା ପତରରୁ ଖୁଣ୍ଟିଲା ଭାତଗଣ୍ଡିଏ ପାଇ ଉଦରର ଜ୍ୱାଳା ନିବାରଣ କରେ । ପୁଣି ବୁଲେ, ପୁଣି ଖୋଜେ, ଖୋଜା ତାର ସରେ ନାହିଁ, ଦୁଃଖ ତାର ଘୁଞ୍ଚେ ନାହିଁ । ଖୋଜିବାର କ୍ଷଣରେବି ଯେମିତି ଗୋଟାଏ ଆନନ୍ଦ ଅଛି । ସେ ଆନନ୍ଦ ଖୋଜିବାର ସାର୍ଥକତାରେ ନହେଉ, ଖୋଜିବାର ଯଥାର୍ଥତାରେ ପୁଷ୍ଟ ହୁଏ ।

ଆଗରେ ଏକ ବିଶାଳ ପ୍ରାସାଦ । ଭିକାରୀ ତୋରଣ ସମୀପରେ ଯାଇଁ ଉଭା ହେଲା । ବହୁ ଲୋକଙ୍କର ଯାତାୟାତ, କିନ୍ତୁ ଭିକାରୀ

ଉପରେ ତାଙ୍କର ଦୃଷ୍ଟି ପଡ଼ିବାକୁ ନାହିଁ । ଉକାସୀ ଗୀତ ଗାଇବା ପାଇଁ ଏକତାରୀ ତାରରେ ଅଙ୍ଗୁଳି ଦେବାକ୍ଷଣି ଗୋଟକ-ଝଙ୍କୃତ କଲେ । ସେ କରୁଣ ହୋଇ ଫେରିଲା ।

"ଉକାସୀ !" ପଛଆଡ଼ୁ କିଏ ଡାକିଲା ।

ଉକାସୀ ଥାକ୍ ଗଲା । ଫେରିପଡ଼ି ଚାହିଁଲା—ଶିବିକାର ଦ୍ୱାର ଅର୍ଦ୍ଧୋନ୍ମୁକ୍ତ । ସେଇ ଛିଦ୍ର ଭିତରୁ ଯୋଡ଼ିଏ ସଜଳ ନୀଳ ଆଖି ଜଳି ଉଠୁଛି ।

ଶିବିକା ଧୀରେ ଧୀରେ ପ୍ରାସାଦ ମଧ୍ୟରେ ପ୍ରବେଶ କଲା । ସଙ୍ଗେ ସଙ୍ଗେ ମଙ୍ଗଳ ମଧୁର ବାଜା ଉଠିଲା । ଗୋଟିଏ କି ଅଜଣା ଆତଙ୍କରେ ଉକାସୀର ହୃଦୟ କମ୍ପି ଉଠିଲା ।

"ରାଜବାଟୀର ପଛପଟକୁ ଚାଲ !" ଜଣେ ଅପରିଚିତ ବ୍ୟକ୍ତି ଆସି ଡାକିଲା । ଉକାସୀର ମୁହଁରେ ଭାଷା ନଥିଲା । ମନ୍ତ୍ରମୁଗ୍ଧପରି ସେ ସେହି ବ୍ୟକ୍ତିର ପଛେ ପଛେ ଚାଲିଲା ।

ପ୍ରାସାଦର ପଶ୍ଚାଦ୍‌ଦେଶସ୍ଥ ଦ୍ୱାର ସମ୍ମୁଖରେ ସେ ଠିଆ ହେଲା । ଭିତରରୁ ଆଜ୍ଞା ହେଲା—ଉକାସୀ, ଗୀତ । ଉକାସୀ ଧୀରେ ଧୀରେ ଧରିଲା—'ରତ୍ନ ସିଂହାସନ ମଣ୍ଡଳମଣିକ କହୁରୁଛି କଥାଏ, ମୋହ କର୍ମକୁ ଯେ ବଧିର ହୋଇଲେ ନଶୁଣିଲେ ଦୟାମୟେ ।'

ସଙ୍ଗୀତ ଶେଷ ହେଲା । ରାଜା ଏବଂ ରାଣୀ ଉଭୟେ ବାଜେ କଲେ । ରାଣୀ ନିଜ ହାତରେ ଉକାସୀର ଜୀର୍ଣ୍ଣ ଥଳୀଟିକୁ ସ୍ୱର୍ଣ୍ଣ ମୁଦ୍ରାରେ ପୂର୍ଣ୍ଣ କରିଦେଲେ ।

ଭିକାରୀ ପରେ ରାଣୀଙ୍କ ମୁହଁକୁ ନିରେଖି ଚାହିଁଲା । ତା'ପରେ ଧୀରେ ଧୀରେ ନିଜର ଥଳୀଟିକୁ ରାଣୀଙ୍କର ପାଦତଳେ ଥୋଇ ଦେଇ ଖୁବ୍ ଦ୍ରୁତଗତିରେ ପଳାଇଗଲା ।

"ଭିକାରୀ, ଭିକାରୀ !" ରାଣୀ ଡାକିଲେ ।

"ଭିକାରୀ, ଭିକାରୀ !" ରାଜା ମଧ୍ୟ ଡାକିଲେ ।

"ଭିକାରୀ, ଭିକାରୀ !" ପାତ୍ର ମନ୍ତ୍ରୀମାନେ ଚିତ୍କାର କଲେ ।

ଭିକାରୀ କାହାରି କଥା ଶୁଣିଲା ନାହିଁ ।

ଭିକାରୀ ଅନ୍ନପୂର୍ଣ୍ଣାର ରୂପ ଦେଖିଛି । ତଥାପି ଭିକାରୀ ଆପଣାର ଅନ୍ତରର ଅନ୍ନପୂର୍ଣ୍ଣାକୁ ଦେଶ ବିଦେଶରେ ଖୋଜିବୁଲୁଛି କାହିଁ ତାର ଅନ୍ନପୂର୍ଣ୍ଣା !

ତାର ଥାଳି ଆଉ କେବେ ପୂର୍ଣ୍ଣ ହେଲାନାହିଁ ।

# ବିସ୍ମରଣ

'ସୁଷମା !'

ଶ୍ରୀହର୍ଷ ଡାକିଲା । ଶ୍ରୀହର୍ଷର ଛାଇ ଦେହରେ ତାର ପ୍ରତିମୂର୍ତ୍ତି । ସୁଷମା ମନେ ମନେ ତା'ର ଚରଣରେ ଅର୍ଘ୍ୟ ଅର୍ପଣ କରୁଥିଲା ।

ଶ୍ରୀହର୍ଷ ଭାବୁଥିଲା, ସୁଷମା କାନ୍ଦିବ କି ? କିନ୍ତୁ ସୁଷମାର ଆଖିରେ ଲୁହ ନଥିଲା ! ମୁଖମଣ୍ଡଳରେ ଅପୂର୍ବ ଦୀପ୍ତି—ଗୌରବର ପରି-ଭାଷା ପରି ।

'ମୋର ଆଜି ବଡ଼ ଆନନ୍ଦ ସୁଷମା, ମୁଁ ତମ ଭଳି ବାଳିକାର ପରିଚୟ ପାଇଛି ।'

ରାଜଦୂତମାନେ ବନ୍ଦୀ ଶ୍ରୀହର୍ଷକୁ ନେଇଯିବାକୁ ବସିଥିଲେ ।

'ନମସ୍କାର !' ଶ୍ରୀହର୍ଷ ବିଦାୟ ମାଗିଲା ।

'ହର୍ଷ !'

ଶ୍ରୀହର୍ଷ ଚାଲି ଯାଉଥିଲା । ସୁଷମା ପଛଆଡ଼ୁ ଆକୁଳ ହୋଇ ଡାକିଲା । ଶ୍ରୀହର୍ଷ ଫେରି ପଡ଼ି ଚାହିଁଲା । ସୁଷମା ବାଷ୍ପ ଆକୁଳ ନେତ୍ରରେ ଚାହିଁଥାଏ—'ହର୍ଷ କୁହ, ଏଇ ଶେଷଥର—ଆଉ ଥରକ ପାଇଁ କହିଯାଅ—' କହୁଥିଲା ।

ଆଉ କହିପାରିଲା ନାହିଁ ।

'କ'ଣ ?' ହର୍ଷ ପଚାରିଲା ।

ସୁଷମା ପୁଣି ତଳକୁ ମଥା ପୋତିଦେଲା ।

'କ'ଣ ସୁଷମା !' ଶ୍ରୀହର୍ଷ ପୁଣି ପ୍ରଶ୍ନ କଲା—'କ'ଣ କହିବି ?'

'ଯାହା ମୁଁ କେବେ ଭୁଲିପାରିବି ନାହିଁ ।' ସୁଷମା କହି ପାରିଲା ।

ହର୍ଷ ହସିଲା । କହିଲା—'ସେ କଥା ତମେ ଜାଣ ।'

ରାଜଦୂତମାନେ ଶ୍ରୀହର୍ଷଙ୍କୁ ଘେରିଗଲେ । ସୁଷମା ଆଉ ଚାହିଁ ପାରିଲା ନାହିଁ ତାଙ୍କୁ । ତାଙ୍କୁ ଚାହିଁ ସେ ଅସ୍ତଗାମୀ ସୂର୍ଯ୍ୟର କମ ମଳିନ କିରଣର ତାପ ଅନୁଭବ କରୁଥିଲା, ବରଂ ସେଇ ତାପର ତାକୁ ଏକପ୍ରକାର କରୁଣ ହସ ହସି କହୁଥିଲା—'ଏ କଥା ତମେ ଜାଣ ସୁଷମା ।'

ହଁ, ଶରତର ସନ୍ଧ୍ୟା ହସି ଉଠିଥିଲା ସେଦିନ । ସେଭଳି ହସ ଆଉ କେବେ ହସିନାହିଁ ସେ । ଅନେକ ଶରତ ଗଲାଣି, ଶୀତର ଧୂସର ଅଭ୍ରରେ ମିଶି ମିଶି ଗଲାଣି, କେତେ ଶରତର ସାନ୍ଧ୍ୟ କୁଙ୍କୁମ କିନ୍ତୁ ସେଦିନର ସେ କିରଣ—ହର୍ଷ ବିଷାଦର ସମ୍ମିଶ୍ରଣ ସେ ।

ସେ ଅନେକ ଦିନର କଥା ।

ତା'ପରେ ଆସିଲା ଶ୍ରୀହର୍ଷଙ୍କର ଯାବଜ୍ଜୀବନ ଦ୍ୱୀପାନ୍ତର ସମ୍ବାଦ, ରାଜଦ୍ରୋହ ଅପରାଧରେ । ସହସା ନଗରରେ ବିଷାଦର ଛାୟା ଘୋଟିଗଲା । ସମସ୍ତଙ୍କ ମୁହଁରେ 'ଆହା'ର ଭଙ୍ଗି ଉଠିଲା । ସୁଷମା ଅତି ଶାନ୍ତ ଭାବରେ ସ୍ୱାଗତ କରିଥିଲା ସେଦିନ ସେଇ ସମ୍ବାଦକୁ ।

ଶୀତ ଚାଲିଯାଇଛି, ଆସିଛି ବସନ୍ତ । ନୂତନତ୍ୱ ନାହିଁ, ଏ ତ ଚିରଦିନର ଗୀତ କିନ୍ତୁ ସେଦିନ ସୁଷମା ସେଇ ପୁରାତନ ଭିତରେ ନୂତନର ସନ୍ଧାନ ପାଇଲା । ଶ୍ରୀହର୍ଷ ଯାହା କହି ଯାଇଥିଲା, ସେ କେବଳ ତା'ର ସୂଚନା । ରାଜଦ୍ରୋହୀ ଶ୍ରୀହର୍ଷ ।

ସେ କ'ଣ ଏଇ କଥା ! ଜଗତର ସମସ୍ତ କ୍ଷଣିକ ଅସ୍ଥିରତା ଭିତରେ ଏଇ କ'ଣ କେବଳ ଅକ୍ଷୟ ସନାତନ ! ଯାହାକୁ ସେ ଜାଣେ । ଜାଣିଥିଲା । ଯାହାକୁ ସେ ପାଇଛି । ଗୋଟାଏ ଅପୂର୍ବ ଅନବଦ୍ୟ ପଦାର୍ଥ ।

ଅନୁଣାର ପ୍ରେମରେ ସେଦିନ ସେ ସନ୍ଧାନ ପାଇଥିଲା ଯାହାର ଅପାରଣାର ଅସ୍ତରୁ। ସ୍ୱର୍ଣ୍ଣିମ ଏଇ ଭୁଲ ଜୀବନଠା ନିରନ୍ତର। ମଣିଷ ମଣିଷକୁ ଭୁଲିଯାଇ ପାରେ, କିନ୍ତୁ ଭୁଲିପାରେ ନାହିଁ ଯେଉଁଟିଏ କଥା, ସେ ଏଇ ପ୍ରେମ।

ଆଉ ଦିନେ। ତାର କେତେଦିନ ପରେ। ଅନେକ ଦିନ ହୋଇଗଲାଣି। ସୁଷମାର କୋଳ ଉଜ୍ଜ୍ୱଳ କରି ଆବିର୍ଭୂତ ହେଲା ଆଉ ଗୋଟିଏ ଅମୂଲ୍ୟ ବସ୍ତୁ। ଦେବଶିଶୁ ସାତ୍ତ୍ୱିକା। ପ୍ରଣୟର ଅବଦାନ ରୂପେ। ପ୍ରେମର ଚରମ ସ୍ୱୀକାର ସେ। ଭଲ ପାଇବାର ଧାରାବାହିକତା। ସ୍ନେହର ଅନୁଷ୍ଠା ସ୍ମୃତି।

ଯା ଭିତରେ କେତେ ଶରତ ଶୀତ ଚାଲିଯାଇଛି। ଚାଲିଗଲା।

ସେଦିନ ଦାଣ୍ଡ ଦୁଆରରେ କିଏ ଆସି ଠିଆହେଲା, କିଏ ଏ? ରୁକ୍ଷ ବିନ୍ୟସ୍ତ ଅର୍ଦ୍ଧପକ୍ୱ କେଶଗୁଚ୍ଛ। ଶ୍ମଶ୍ରୁ ବହୁଳ ମୁଖମଣ୍ଡଳ। କୋଟରଗତ ଚକ୍ଷୁ। ଛିନ୍ନ ପରିଧାନ। କ୍ଷୀଣ ଦେହ। ବୟସର କଷାଘାତ—ତାର ଚିହ୍ନ ଅତି ସୁସ୍ପଷ୍ଟ।

'ମା' ବାଇଆ !' ସାତ୍ତ୍ୱିକା ଡରରେ ଘରକୁ ପଳାଇଲା।

'ମୋ ଝୁଅ !' ବୋଲି କହି ସୁଷମା ପୁଅକୁ ଜାକିନେଲା କୋଳରେ। ଆଉ କଟମଟ କରି ଚାହିଁଲା ପାଗଳାକୁ। ସେଇ ପାଗଳାକୁ। ଦୁଆର ବନ୍ଧ ପାଖରେ ଠିଆ ହୋଇ।

'ଯାଃ, ଯାଃ, ଯାଃ ଏଠୁ !' ସୁଷମା କ୍ଷେପି ଉଠିଲା।

ପାଗଳା ଚାହିଁ ଥାଏ। ଓଠ ଉପରେ ଗୋଟେ ନିସ୍ପୃହ ହସ ଉଠି ମଧ୍ୟ ଉଠିପାରୁ ନଥାଏ।

ହଠାତ୍ ସଙ୍କେତ ଶବ୍ଦ ହେଲା । ରାଜଦୂତମାନେ ଗୃହଅଙ୍ଗନ ଘେରିଗଲେ । ସମସ୍ତେ ଥିଲେ, କିନ୍ତୁ ପାଗଳ ଗଲା ନାହିଁ । ପାରିଥିଲେ ପାଳିଥାନ୍ତା, କିନ୍ତୁ ପଳାଇଲା ନାହିଁ । ନିର୍ଭୀକ ନିସ୍ପନ୍ଦ, କେବଳ ବିସ୍ମୟ ନେତ୍ରରେ ଚାହିଁ ରହିଥାଏ ସେଇ ସୁଷମାକୁ ।

ବିଦ୍ରୂପ ନୁହେଁ । କରୁଣ ନୁହେଁ । ଅସଙ୍ଗତ ନୁହେଁ । ଅନର୍ଥକ ନୁହେଁ । ଅଥଚ ଗୋଟାଏ ବିକୃତ ହସ ସେ ହସିଲା । ବଡ଼ ଭୀଷଣ କିନ୍ତୁ—

ରାଜଦୂତମାନେ ବନ୍ଦୀଶାଳାରୁ ପଳାୟନକାରୀ ବନ୍ଦୀକୁ ନିର୍ମମ ପ୍ରହାର କରି ଘେନି ଯାଉଥିଲେ । ଶ୍ରୀହର୍ଷ ଅଙ୍କ ଆଡ଼ଥରେ ପଛକୁ ଚାହିଁ କହିଲା—'ସଂସାରରେ ଗୋଟିଏ କଥା ଅଛି, ମଣିଷ ତାକୁ କେବେ ଭୁଲିପାରେ ନାହିଁ, ସେ ହେଉଛି—ବିସ୍ମରଣ !'

ସୁଷମା ଚାହିଁ ଥିଲା । ଶ୍ରୀହର୍ଷ ଆଉ ପଛକୁ ଫେରି ଚାହିଁ ନାହିଁ ।

ଶ୍ରୀହର୍ଷ କହିଗଲା—'ସେଇ ମଣିଷ ଜୀବନର ଦାରୁଣ ଅଭି-ଶାପ ।' ସୁଷମାକୁ ସେମିତ ଲାଗିଲା, ଶ୍ରୀହର୍ଷ କହିଲା ପରି ।

ସେ କିନ୍ତୁ ମାନିଲା ନାହିଁ । ମାନିବାକୁ ପ୍ରସ୍ତୁତ ନଥିଲା ।

ଲୁଅ ଆଖିରୁ ଅନ୍ତର ଛାତି ପାଖକୁ ଯାକନେଇ ସେ ପ୍ରତିବାଦ କରୁଥିଲା—'ନା ନା, ସେଇ ହଉଛି ଭଗବାନଙ୍କ ବରଦାନ । ଏଇ ଦୁଃଖମୟ ସଂସାରରେ ।' ଶ୍ରୀହର୍ଷ କଥାର ପ୍ରତିବାଦ ସେ ।

ସାତ୍ତ୍ୱିକା ହସିଦେଲା । ସୁଷମା ଚମକିଟିଏ ଖାଇ ପୁଞ୍ଜିଗଲା ଘର ଭିତରକୁ । ହାଣ୍ଡିରେ କେହି ନଥିଲେ ।

## ମଧୁଗନ୍ଧା

ବିଟମୋହନ ଧୀରେ ଧୀରେ ସେଇ ଘରଅଡ଼କୁ ଗଲା ।]

ବହୁତ ଦୂର ବାଟ । ବାଟ ଚାଲୁ ଚାଲୁ ବାଟ ଚଲାର ନନ୍ଦ-ଘରେ ମନେ ନାହିଁ କେଉଁଠିକି ଯିବାକୁ ହବ । ଅଥଚ ବାଟ ବଣାଟିହୁଇ ଯାଇନାହିଁ । ଆଉ ଅଳ୍ପ ଦୂର ଅଛି ପହଞ୍ଚିବାକୁ । ଭାରି କଷ୍ଟ । ହଠାତ୍ ମନେ ପଡ଼ିଗଲା ଲହଡ଼ି ମାଡ଼ିଆସିଲା ପରି । ଲଘର କଳ୍ପନା, ପହଞ୍ଚିବାର ଆନନ୍ଦ ମନକୁ ଯେମିତି ବଦଳାଇଦିଏ ଦିଗୁଣ ବଳରେ ଦୂର ବାଟର ସବୁ ଦୁଃଖକୁ ଆପଣା ଅଗୋଚରରେ ଖେଦେଇ ପକେଇ ଠିକ୍ ସେମିତି । ବିଟମୋହନର ଆଗ୍ରହ ଯେମିତି ବନ୍ଧ ଭାଙ୍ଗି ପଡ଼ିଗଲା ।

ଭଣ୍ଡାରୀଟା ଠାଇଦେଇ ଚାଲିଗଲା । ଇସାରାରେ ସେ ଯାହା କହିଗଲା, କଥାଠାରୁ ଢେର୍ ସୁସ୍ପଷ୍ଟ । ସେ କେଉଁଅଡ଼କୁ ଗଲା କେଜାଣି । ମିଛୁଟାରେ ବିଟମୋହନ ତା' ଯିବା ବାଟକୁ ଚାହିଁଲା । ଚାରିଅଡ଼କୁ ଅନେଇଲା । ସାଙ୍ଗମାନେ ପ୍ରାୟ ଶୋଇ ପଡ଼ିଛନ୍ତି । ସେ ପାଦ ଉଠାଇ ଆଗକୁ ବଢ଼ିଲା ।

ଗୋଡ଼ଟା ଅଟକିଲା । ସେ ମାନିଲା ନାହିଁ । ଛାତିଟା ଡେଇଁଲା । ତାକୁ ସେ ଶୁଣିଲା ନାହିଁ । ଦିହଟା ଚଞ୍ଚଳ ହେଲା । ଦୁର୍ବଳ ମଣିଷ ଯେମିତି ବଳ ଦେଖାଏ ସେମିତି । ସେ ଆପଣାକୁ ବୁଝେଇ ପାରୁ-

ନଥିଲା, ସମସ୍ତେ ଯାହା କରନ୍ତି, ସେ ସେଇଆ କରିବାକୁ ଯାଉଛି ବୋଲି । ଅଥଚ ସେ ଦୁର୍ବଳତାକୁ ଜୟ କରିବାକୁ ଚାହୁଁଥିଲା । କାରଣ ଦେଖାଇ ନୂଦେଇଁ—ଜବରଦସ୍ତି । ସେ ପେଲି ପଶିଗଲା ଘର ଅଗଣାକୁ । ଭରା ନଈର ବାନ୍ଧ ଗୋଟାଏଠି ଘାଇ ଖୋଲିଦେଲା ପରି ।

ଦୁଆର ପାଖରେ, ଦୁଆରକୁ ଚୁଖଟେଣ୍ଡ ଛୁଞ୍ଚି ସେ ଦମ୍‌କିନା ରହିଗଲା । ପୁଣି ଥରେ ଚାହିଁଲା—କେହି ନାହାନ୍ତି ତ !

କେହି ନଥିଲେ । ସେ ଦରଆଉଜା ଦୁଆରର କବାଟ ଉପରେ ହାତ ଦେଲା । ଠିକ୍‌ଏ ଠେଁ ପୁଣି ଶବ୍ଦ ହେଲା ଲୁହାପେଞ୍ଚର । ସେ ଚମକି ପଡ଼ିଲା । ପୁଣି ଥରେ ପଛକୁ ଫେରିପଡ଼ି ଚାହିଁଲା—କିଏ ଯେମିତି ଚାହୁଁଛି ।

ବହୁତ କହିଥିଲା । ଯଣ୍ଟା ବାଜି ମାରିଥିଲା । ସେମାନେ ସବୁ କ'ଣ ଚାହିଁଚନ୍ତି ! ମିଛଟାରେ ଆଖି ବୁଜି ପଡ଼ିଚନ୍ତି ?

ସେ ଖଞ୍ଜାର ସେ ଦରବୁଢ଼ୀ ମାଇପୁଅଟା ନୂଆବୋଉ ନେଖା ହବ—କାହିଁ ତ କେହି ନାହାନ୍ତି !

ଯଦି ଆସି ଦେଖନ୍ତି ! ଛି ଛି, କି ଲଜ କଥା !

ତା'ପରେ ସେ ହସି ପକେଇଲା । ବୋଧହୁଏ ନିଜକୁ । ସେ ହସ ଭିତରେ ଅନେକ କଥା ।

ସେ କବାଟ ଖୋଲିଦେଇ ଭିତରକୁ ଗଲା । ତାପରେ ବନ୍ଦ କରିଦେଲା ଏକା ଚାହାରେ । ବାହାରେ ଆଉ କାହାରି ଚକ୍ଷୁକର୍ଣ୍ଣ ନାହିଁ । କିଏ ଆସିଲେ ବି କିଛି ଦେଖିପାରିବେ ନାହିଁ । କବାଟକୁ

ଭଲକରି କଳି ଜଞ୍ଜିର ଲଗେଇ ଦେଲା । ସେ ପାଖର ଆକାଶଟା କଉଁ କାଣ୍ଟି ବା ଫାଙ୍କ ବାଟେ ଏ ପାଖକୁ ଉଙ୍କିମାରୁଥିବ କାଳେ । ଭଲକରି ଜଞ୍ଜିର ଲଗେଇଦେଲା ।

ଝିଡ଼କି, ଛୋଟ ଝିଡ଼କିଟିଏ ଖୋଲା ଥିଲା । ସେବାଟେ ଅନ୍ଧାର ରାତିର ମିଞ୍ଜି ମିଞ୍ଜି ତାରାଗୁଡ଼ାକ ଚୁହାଁ ଜଳକା ପରି ଅନେଇ ରହିଛନ୍ତି । ଦୁଆରପଣା ଆକାଶ ଆଉ ଝରକା ଡିଅଁ ଆକାଶ ଭିତରେ ବହୁତ ତଫାତ୍ । ସେ ପାଖ ଆକାଶ ତା ଆସିବାକୁ ଦେଖିଛି । ଅଉ ସେ ଆସିବାବେଳକୁ ତା' ପଛେ ପଛେ ଯେମିତି ଗୋଡ଼େଇ ଆସୁଛି ସିଂହଦ୍ୱାରି ପରି । ଏପାଖ ଆକାଶ ତାକୁ ଦେଖି ଉହାଡ଼ରେ ଲୁଚିଯିବାକୁ ମନେ କରୁଛି । ସପ୍ତର୍ଷି ମଣ୍ଡଳପରି ଆପଣା ସ୍ଥାନରେ ବସିଯିବା ପାଇଁ ।

ତଥାପି ସେ ଝରକା ବନ୍ଦ କରିଦେଲା । ବନ୍ଦ କରିଦେଲା ବେଳେ ତା' ମୁହଁରେ ପୁଣି ଟିକିଏ ହସ ଫୁଟି ଉଠିଲା । ସେ ହସର ଅର୍ଥ ଏକାଧିକ ।

ପଲଙ୍କ ଉପରେ ଫୁଲ ଶେଯ । ସେ କୋଣରେ ପିଲସଜ ଉପରେ ପିତଳ ଦୀପଟିଏ ଜଳୁଛି—ଘିଅ ଦୀପ । ତଳେ ମସିଣା ଉପରେ ବସିଛି—ସେ । ଅନେଇ ଦେଇ ବିମୋହିତ ଥମିଗଲା । ଥକା ଟଲା ପରି । ଡେଣିକା ଗୋଡ଼ ବଢେଇ ବାଡେଇ ଗୋଡ଼ର-ହାଡ଼ ପୁଞ୍ଜାକ ମେଲେଇ ଯାଇଁ ମାଉଁସ ମେଞ୍ଚେ ହୋଇଗଲାଣି ଆଜ । କ'ଣ କହିବାକୁ ଚାହୁଁଥିଲା । ଜିଭଟା ଭିତରେ ହାଡ଼ ଗଣ୍ଠି ହୋଇ ରହି ଯେମିତି ଲେଉଟୁ ନାହିଁ ।

ସେ ପୁଣି ହସିଲା । ସେଇ ହସର ଅର୍ଥ ଗୋଟିଏ ।

ସେ ଜାଣୁ । ତା ଜାଣିବାଟରେ କ'ଣ ଅଛୁ । ଆଉରେ, ସେ ନ ଜାଣିବ କମିତି । ତା' ନଜାଣିଲା ପରି ବ୍ୟାମୋହିତର କ'ଣ ଥାଇପାରେ ?

ତଥାପି ଲାଜ ମାଡୁଥିଲା । ସେ ଭାବିବ କ'ଣ ! କିନ୍ତୁ ତା' ଭାବିବାରେ ଯାଏ ଆସେ କେତେ । ତା'ର କ'ଣ ଅଳ୍ପ ସ୍ୱତନ୍ତ୍ରତା ଅଛି । ସେ ଦୁହେଁ ଯେ ଏକ । ସେ ତାର ଅର୍ଦ୍ଧାଙ୍ଗିନୀ, ସହଧର୍ମିଣୀ, ସୁଖ ଦୁଃଖର ସାଥି ।

ଖାଲି କ'ଣ ସେତିକି ! ତା'ର ପାଇଁ ତ ସବୁ । ଏ ଦେହ ଦୀପ, ନଈଆ, ଘର ଦୁଆର ସାଜସଜ୍ଜା ସବୁ । ସବୁଟରେ ତା'ର ଅଧିକାର । ଲାଜ କଟିହେବ କମିତି !

'ବଭ !' ସେ ଡାକିଲା ।

ଉତ୍ତରର ଓଢଣା ଭିତରେ ଅଳକ୍ଷ ସ୍ପନ୍ଦନ ଛଡ଼ା ଆଉ କେହି ସ୍ୱୀକାର କରିନାହିଁ ସେ ସମ୍ବୋଧନ ।

ଏତିକବେଳେ ତାର ମନେ ହେଲା କବାଟ ସେ ପିଠରୁ କାହିଁ ଠିକ୍ ଏ ଛିଦ୍ର ଭିତର ଦେଇ କାଏ ଯେମିତି ସହସ୍ର ଆଖିକର ଚାହିଁଲା ଆସି ।

ସେ ତାକୁ ସତ ବୋଲି ମାନିବାକୁ ପ୍ରସ୍ତୁତ ନଥିଲା । ତଥାପି ଏଥର ତାର ଡାକ ଅନ୍ତର ଧୀର ହୋଇଗଲା—ବଭ ।

ବଭ ତଥାପି ନୀରବ । ବିମୋହିତ ହସିଲା । ଏ ହସିବାର ଅର୍ଥ ହସିବା ।

ସେ ପୁଣି ଥରେ ଥରେ କବାଟ ଆଉ ଝରକା ଆଡ଼କୁ ଚାହିଁ ବିଭା ପାଖରେ ଯାଇଁ ବସିପଡ଼ିଲା । ବିଭାକୁ ତାର ବାହୁଲତାରେ ଘେରି ନେଇ ପୁଣି ଥରେ ଖୁବ୍ କୋମଳ ସ୍ୱରେ ଡାକିଲା—ବିଭା !

ତା ଜବାବ ଯେମିତି ଘର ଆରପାଖରୁ କିଏ ଦେଲା । ସେ ସେତିକି କାନ ଦେଲାନାହିଁ । 'ବିଭା ବିଭା ମ !' ବିଭାକୁ ସେ ହଲେଇ ଦେଲା । ବିଭା ତଥାପି ନିଶ୍ଚଳ । ହଲିଲାବି ନାହିଁ ।

'କ'ଣ ବେଶୀ ଦଲ ହବ ନା ?' ସେ ବଳ କଲା । ବିଭା ବିମୋହିତ ଉପରକୁ ଢଳି ପଡ଼ିଲା । ପଡ଼ିଗଲା ତା' ଉପରେ । ବିମୋହିତ ଉଠେଇନେଲା ତାକୁ, ତାର ସେଇ ଦୁର୍ବଳ ଅବସ୍ଥାରେ ।

ବିଭାକୁ ପଲଙ୍କରେ ବସାଇ ଦେଇ ସେ ପୁଣି ଥରେ ଚାହିଁଲା ଚାରିଆଡ଼କୁ । ଉପରେ ଚାଳ, ତଳେ ମାଟି, ଚାରିଆଡ଼େ କାନ୍ଥ ଛଡ଼ା ଆଉ କେହି ନାହାନ୍ତି ତ ! ତଥାପି ସେ ଚଞ୍ଚଳ ହୋଇ ଉଠୁଥିଲା । ତା' ଛାତି ନାଚୁଥିଲା । ମୁହଁଟା ଗରମ ।

ସେ ଓଢ଼ଣା କାଢ଼ିଦେଲା । ବିଭା ତଳକୁ ମୁହଁ ପୋତିଦେଇ ବସିଲା ନମ୍ର ପରି । ବିମୋହିତ ଆଶ୍ଚର୍ଯ୍ୟ ହୋଇଗଲା । ବିଭା କେମିତି ଆଗରୁ ଜାଣିଲା ସେ କଥା ।

ତା ହେଲେ କ'ଣ ସମସ୍ତେ ଜାଣନ୍ତି ! କେବଳ ବିଭୂତି ଯତୀ ନୁହନ୍ତି, ଖାଲି ତାର ଆଈ ନୂଆବୋହୂ ନୁହନ୍ତି, ସେ ଭଣ୍ଡାଘରଟା ବି ଏକଲା ନୁହେଁ—ସମସ୍ତେ ଜାଣନ୍ତି ! ବନ୍ଧୁ ବାନ୍ଧବ ପ୍ରିୟା ପ୍ରୀତି, ଯେ ଅଛନ୍ତି, ଯେ ବରଯାତ୍ରୀ ଯାଇଥିଲେ, ଯାହାଙ୍କୁ ନିମନ୍ତ୍ରଣ ପଠାଯାଇଥିଲା, ଯେ ଆସିଲେ, କିଏ ବା ନ ଆସିପାରିଲେ ଜଣେ କେହିବି ବାଦ୍

ଯାଇନାହିଁ ସେଥିରୁ—ସମସ୍ତେ ଜାଣନ୍ତି ତା ହାଲ ! ଦୁନିଆଯାକ ସମସ୍ତେ ଜାଣନ୍ତି ଦେଇ ତାର ଆଜି ମର୍ମନ୍ତୁଦ ଅବସ୍ଥା ।

ସମସ୍ତେ ଜାଣନ୍ତି ଯେ ସେ ଏଠିକି ଆସିଛି । ସମସ୍ତେ ଜାଣିଥିଲେ ଯେ ସେ ଏଠିକି ଆସିବ । କେହି ଆସି ଦୁଆର ମୁହଁରୁ ଥାଇ ନ ଦେଖିଲେ ବି ସମସ୍ତେ ଦେଖିଲାପରି—ସମସ୍ତଙ୍କ ଆଖି ସାମନାରେ ସେ ଅଭିନୟ କରୁଛି ।

ସେ ହସିଲା । ପାଗଳ ପରି ।

ସେ ବିଲ୍ଲୁକୁ ଟୋକିଏ ଚୁମା ଦେଲା । ମନେ ହେଲା ଯେମିତି ଦୁଆର ସେ ପଟରେ କିଏ ହସି ପକେଇଲା । ସେ ଦୁଆର ଆଡ଼କୁ ଚାହିଁଦେଲା । ଯେମିତି କିଏ ସବୁ ଦାନ୍ତ ଦଳିତ ପଳାଉଛନ୍ତି । ସେ ବିଲ୍ଲୁକୁ ଖୁବ୍ ଜୋରରେ ଛାତି ପାଖକୁ ଭିଡ଼ିନେଲା । ବାହାରେ ଯେମିତି ହସର ଲହରି ଅଭୁତ ଉଠୁଛି । ସେ ଝଡ଼ ଭିତରେ ବିଲ୍ଲୁ ଆଉ ସେ ବୁଡ଼ିଗଲେଣି ।

ମନେ ହେଲା ବିଲ୍ଲୁ ଯେମିତି ତାର ଅନେକଦିନର ଚିହ୍ନା— ଅନେକ ଦିନର ଜଣାଲୋକ । ବହୁପୂର୍ବରୁ ବିବାହିତା ସ୍ତ୍ରୀ । କେତେଦିନରୁ ଘର କରିଲେଣି । ଦୁନିଆଯାକ ଜାଣନ୍ତି ସେ କଥା । ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା ପର୍ଯ୍ୟନ୍ତେ । ଗଛପତ୍ର ନଈ ନାଳ ଏପରିକି ଦାଣ୍ଡର ଧୂଳି ବାଲିବି ଜାଣିଗଲେଣି—ଦୁହେଁ ବିବାହିତ ସ୍ତ୍ରୀ ପୁରୁଷ, ବିବାହିତ ।

ଖାଲି ସେତିକି ନୁହେଁ । ଏ ଅପବାଦକୁ ଲୁଚେଇବାକୁ ଯେମିତି ଆଉ ବାଟ ନାହିଁ । ବିଲ୍ଲୁ ସତେ ଯେମିତି ବିମୋହିତର ସନ୍ତାନର ମା ହେଇ ସାରିଛି—ବହୁଦିନ ଆଗରୁ ।

ଆଉ ଲାଜ କ'ଣ ?

... ... ...

ଧଡ଼କିନା କବାଟ ଖୋଲି ବର୍ଷାହତ ଏକା ନିଶ୍ୱାସକେ ବାହାରକୁ ଚାଲି ଆସିଲା । ବିଜୟୀ ପାରୁ ଦୁର୍ବଳ ବିଜିତ ଯେମିତି ପଳେଇଯାଏ ରଣଭୂଇଁରୁ ।

ତାର ମନେ ହେଲା, ହଠାତ୍ ଯେମିତି ବାହାଘରର ବାଜା ସବୁ ବନ୍ଦ ହୋଇଗଲା । ରୋଷଣୀ ଦପ୍ ଦପ୍ କିନା ଲିଭିଗଲା । ଏଇ ଦଣ୍ଡକ ଆଗରୁ କାନରୁ ଅତଡ଼ା ଖସି ପଡୁଥିଲା ଢୋଲ୍ ଢମକ ତୁରୀ, ଭେରୀ, ମହୁରୀର ଶବ୍ଦରେ । ବାଣ ଫୁଟି ଆଖିରୁ ନିଆଁ ଖସେଇ ପକଉଥିଲା । ଯେମିତି ନିହାତି ଗୋଟାଏ ପୁରାତନ ଅସଭ୍ୟ–ତାକୁ ଢୋଙ୍କେଇବାପାଇଁ ନିହାତି ଅଯଥା ଆଡ଼ମ୍ବର ଏ । ଅଯଥା ଆବରଣ—ଅକାରଣ ସାଜସଜ୍ଜା ।

ଆଉ ତା'ର ଦରକାର ନାହିଁ ଏବେ ।

# ଶିଳା

ବୌଦ୍ଧ ବିହାରର ଗୋଟିଏ ଏକାନ୍ତ ସ୍ଥାନରେ ଶିଳା ଖଣ୍ଡେ ପଡ଼ିଥାଏ । ଶିଳା ନୁହେଁ, ଗୋଟିଏ ପ୍ରସ୍ତର ମୂର୍ତ୍ତି । ତାର ଇତିହାସ କେହି ଜାଣନ୍ତି ନାହିଁ । ସେ କେଉଁଠୁ ଆସିଥିଲା, କିଏ ଆଣିଥିଲା, କିଏ ଗଢ଼ିଥିଲା, କାହିଁକି ଗଢ଼ିଥିଲା ତା' ଖବର କେହି ରଖିନାହାନ୍ତି । ହୁଏ ତ କେଉଁ ଦେବୀ ମୂର୍ତ୍ତି ହୋଇଥିବ କିମ୍ବା କେଉଁ ନାଟଶାଳାର ଶିଳାସ୍ତମ୍ଭରୁ ଚ୍ୟୁତ ହୋଇ ପଡ଼ିଥିବ, ଅଥବା କେଉଁ ଭ୍ରାମ୍ୟମାନ ସୌଦାଗରର ସଂଗ୍ରହ ମଧ୍ୟରୁ ଗୋଟିଏ । ତାର ଅସାବଧାନତାରୁ ଖସିପଡ଼ିଛି ପଥ ମଧ୍ୟରେ । କିଏ କହିବ ସେ କଥା !

ଦିନେ ହୁଏ ତ ତାର ମୂଲ୍ୟ ଥିଲା । ଅମୂଲ୍ୟ ମୂଲ୍ୟ । ଆଜି ମୂର୍ତ୍ତିଟି ଛିନ୍ନମସ୍ତା । ନାସିର ଅବୟବ । ଭଗ୍ନ, ବିକ୍ଷତ । କେଉଁ ଦିନ, କେତେ ବର୍ଷ ପୂର୍ବେ କେତେ ଶତାବ୍ଦୀ ଆଗେ ଏ ମୂର୍ତ୍ତିର ଆଦର ମଣିଷ କି ଭଳି ଭାବରେ କରିଥିଲା ସେ କଥା କେହି କହିପାରିବ ନାହିଁ । କିନ୍ତୁ ବୌଦ୍ଧଯୁଗର ଏଇ ପ୍ରାରମ୍ଭିକ କାଳରେ ତା'ର ମୂଲ୍ୟ ତୁଚ୍ଛ ଅକର୍ମଶିଳା ସଙ୍ଗେ ସମାନ ।

କେହି ଦେଖନ୍ତି ନାହିଁ । କେହି ଭ୍ରୂକ୍ଷେପ କରନ୍ତି ନାହିଁ । ଏକାନ୍ତ ସ୍ଥାନ । କେହି ଆସନ୍ତି ମଧ୍ୟ ନାହିଁ । ସୌମ୍ୟକାନ୍ତ ଏକାକୀ ଆସେ । ପ୍ରତିଦିନ ସନ୍ଧ୍ୟାରେ ସେଇ ମୂର୍ତ୍ତି ପାଖରେ ଆସି ଠିଆହୁଏ । ହାତରେ ଥାଏ ଗୁଚ୍ଛଚ୍ୟୁତ ଗୋଟିଏ ଫୁଲ । ବୃନ୍ତ ହୀନ । ସେଇ ପଥର ମୂର୍ତ୍ତି ଉପରେ ସେ ଫୁଲଟିକି ଚଢ଼େଇ ଦେଇ ସେ ଗୁହେଁ । ମୂର୍ତ୍ତିଟି ହସି ଉଠେ । ସେ ହସ ତା'ର ପାଷାଣ ଦେହର ପ୍ରତି ସୂକ୍ଷ୍ମ

ଛିଦ୍ର ଭିତରୁ ଚୁଇ ପଡ଼େ । ସୌମ୍ୟବନ୍ତ ସେ ହସରୁ କ'ଣ ପାଏ କେଜାଣି । ସେ ହସରୁ କ'ଣ ବୁଝେଁ ସେଇ ଜାଣେ । ତା'ପରେ ସେ ଫେରିଯାଏ ।

ଫୁଲଟି ଝାଉଁଳି ପଡେ । ପବନର ହିଂସା ହୁଏ । କେତେବେ କେତେବେ ତାକୁ ଉଡେଇ ନେଇ ତଳେ ପକେଇଦିଏ । ସୂର୍ଯ୍ୟର ବି ଲୋଭ ହୁଏ । ଫୁଲର ସମସ୍ତ ରସ ସମସ୍ତ କୋମଳତାକୁ ଗ୍ରାସ କରି-ଯାଏ । ଫୁଲଟି କେତେବେ କେତେବେ ସେଇ ପଥର ମୂର୍ତ୍ତି ଉପରେ ଶୁଖି ଶୁଖି ମିଳେଇ ଯାଏ । ଟିକିଏ ଦାଗ ରହିଥାଏ । ସେ ବି ଲିଭିଯାଏ ଅସ୍ତେ ଅସ୍ତେ ।

ଏକଥା କେହି ଜାଣନ୍ତି ନାହିଁ । ହୁଏ ତ ଅନେକେ ଦେଖି-ଛନ୍ତି ଯିବା ବାଟରେ । କିନ୍ତୁ ଭଙ୍ଗା ପଥର ଖଣ୍ଡ ଉପରେ ଗୋଟାଏ ଦୁଇଟା ଫୁଲ ଦେଖି ତାହାଁର ବିଶେଷତ୍ୱ ଲକ୍ଷ୍ୟ କଲା ଭଳିଆ ସ୍ପୃହା କାହାର ନଥିଲା ।

ସେଦିନ ସୁପ୍ରଭାତ । କିମ୍ବା ଦୁର୍ଦ୍ଦିନ କିଏ କହିବ ! ଜଣେ କଳାବିତ୍ କାରିଗର ସେଇ ପଥ ଦେଇ ଫେରୁଥିଲେ । ଅବହେଳିତ ଶିଳା ମୂର୍ତ୍ତି ଉପରେ ଦୃଷ୍ଟି ପଡ଼ିଗଲା । ମୂର୍ତ୍ତିର ମାହାତ୍ମ୍ୟ ଦେଖି କ୍ଷଣକରେ ବୁଝିପାରି ଭଗ୍ନ ବିଗ୍ରହଟିକୁ ତାଙ୍କର କଳ୍ପିତ ଗୋଟିଏ କଳା ବା କାରୁକାର୍ଯ୍ୟର ଆଦର୍ଶ କରିବାକୁ ନେଇଗଲେ । ସୌମ୍ୟ-ବନ୍ତ ଜାଣେ ନାହିଁ ।

ସେଦିନ ସନ୍ଧ୍ୟାରେ ମଧ୍ୟ ସୌମ୍ୟବନ୍ତ ସେଇ ସ୍ଥାନଟିକୁ ଗଲା । ହାତରେ ଫୁଲ ଥିଲା । କିନ୍ତୁ ଆଗରେ ମୂର୍ତ୍ତି ନଥିଲା । ଫୁଲ ଖସି ପଡ଼ିଲା ।

ସୌମ୍ୟବନ୍ତ ଖୋଜିଲା । କିନ୍ତୁ ଖୋଜିବାରେ ସ୍ପୃହା ନଥିଲା । ଯେମିତି ପାଳିତ ପକ୍ଷୀ ପିଞ୍ଜିରା ଭାଙ୍ଗି ପଳେଇ ଯାଇଛି ।

ମୂର୍ତ୍ତି ହଜି ଯାଇଛି । କିନ୍ତୁ ସେଇ ସ୍ଥାନରେ ରହିଛି ଗୋଟାଏ ଶଙ୍ଖ । ଖରା, ବର୍ଷା, ଶୀତ, କାକରରୁ ସୁରକ୍ଷିତ ସେଇ ସ୍ଥାନଟି ଯେ କ ଅନେକ ଦିନଯାଏ ସେଇ ମୂର୍ତ୍ତିକ ବକ୍ଷର ବିହିବାର ମୂଳ ସ୍ୱରୂପ ପାଇଛି ଏଇ ସ୍ମୃତି । ସୌମ୍ୟବନ୍ତ ତା'ର ଉପରେ ଫୁଲକୁ ଛିଡ଼ାଇ ଟିକିଏ ଟିକି ପାଖୁଡ଼ାକୁ ବିଛାଇ ଦେଲା ।

'ସୌମ୍ୟବନ୍ତ !'

ପଛଆଡ଼ୁ କିଏ ଡ଼ାକିଲା । ସୌମ୍ୟବନ୍ତ ଗୁହିଁ ଦେଖିଲା ବବୁଲ୍ଧ ।

'ସେଠି କ'ଣ ଦେଖୁଛ ସୌମ୍ୟ !'

'ପ୍ରାଣ-ବନ୍ତ ପ୍ରସ୍ତରର ଗତି !'

'ପ୍ରସ୍ତରର ଗତି !'

'ହଁ, ଆଶ୍ଚର୍ଯ୍ୟ ହେଉଛ ଯେ । ହେଇଟି ଦେଖ୍ ତାର ପାଦ ଶଙ୍ଖ !'

'ପାଗଳ !'

'ମୋର ନଜରର ଅନୁଭୂତି ବବୁଲ୍ଧ; ଜୀବନ୍ତର ସ୍ପର୍ଶରେ ଜଡ ମଧ୍ୟ ଚେତନ ହୋଇଯାଏ ।

# ସପ୍ତ

ସେ ଶତା ? ସେତକ ତାର ଅବଶେଷ ! ଏଇ କାନ୍ଥରେ ଗୋଡ଼ ଉପରେ ପୋଛ ଲିପାହୋଇ ଚାଲିଛି—ପ୍ରତିବର୍ଷ । କିନ୍ତୁ ସେଇ ଶତାଟାକୁ ମୁଁ ଲିପିବାକୁ ଦେଇନାହିଁ ସେ କୋଣଟାରୁ । ତମେ ତାକୁ ଲିପେଇ ଦେବାକୁ ଚାହୁଁଛ ? ଅସୁନ୍ଦର ଦିଶିଲାଣି । କାନ୍ଥରେ [illegible] ହୋଇଗଲାଣି, ନୁହେଁ ?

ଏ ଶତା କେ' ଲେଖିଥିଲା ଜାଣ ?

ସେଦିନ ସାବିତ୍ରୀ ବ୍ରତ । ମା ସାବିତ୍ରୀ ଉପବାସ କରିଥିଲେ । ପୂଜା ସରିଲା । ଆମ ଦାଦାଙ୍କ ମୁଣ୍ଡରେ ଚନ୍ଦନ ଟୋପା ଦେଇ ଦାଦାଙ୍କ ହାତରେ ଗୋଟିଏ ଗୋଟିଏ ଭୋଗନଡ଼ୁ ଧରେଇ, କ'ଣ ଭାବି କେଜାଣି ମା ଆଉ ଥରେ ଦଣ୍ଡବତ କଲେ । ସାବିତ୍ରୀ ମୋତେ ଚାହିଁଲା ମୁଁ ତାକୁ ଚାହିଁଲି । ଠାକୁରଙ୍କୁ ପହିଲେ ସେ ଜୁହାର ହେଲା । ମୁଁ ବି ଜୁହାର ହେଲି । ମୁଁ ମୁଣ୍ଡ ଅଡ଼ାଏ ମାରି ଉଠିପଡ଼ିଲି । ସାବିତ୍ରୀ ଉଠି ନଥିଲା, ମା ବି ଉଠିଲେ । ସେତେବେଳଯାଏ ସାବି ସେମିତ ଅଧିଆ ପଡ଼ିଛି । ସାବି ମୁଣ୍ଡରେ ହାତ ବୁଲେଇଦେଇ ମା' ହସିଲେ । ସାବି ଉଠି ପଡ଼ିଲା । ଲାଜ ଗରଗର ସାବି ମୁହଁଟି ସେତେ-ବେଳେ କେଡ଼ିକି ବିକଟେ ହୋଇଗଲା । ତମର ମୁହଁ ପରି । ଭାରି-ସୁନ୍ଦର ଦିଶୁଥାଏ ।

ମା' ତେଣିକି ଉଠିଗଲେ । ମୁଁ ସିନ୍ଦୁରରୁ ମେଞ୍ଚେ ନେଇ ତା' କପାଳରେ ବୋଳି ଦେଲି । ସେ ପଳେଇଗଲା ଲାଜରେ । ସେଇ-ଦିନ ଏ ଶତାଟି ଲେଖିଥିଲା ସେ ।

ହଁ, ସେଇ ସାବିତ୍ରୀ । ସେଦିନ ବି ଏ ଶତାବ୍ଦୀ ସେମିତି ଥାଏ । ଏତେ ଖରାପ ହୋଇ ନଥିଲା । ଟିକିଏ ଫିକା ପଡ଼ି ଯାଇଥିଲା । ବୋଧହୁଏ ସେ ପାଖ କୋଣରୁ ଟିକିଏ ଝଡ଼ି ବି ପଡ଼ିଥିଲା । ସାବିତ୍ରୀଙ୍କ ଘର କାନ୍ଥରେ ହେଦିନ ଧାନଶିଷା ମଣ୍ଡା ଫୁଲ ଫୁଟେଇ ସାବି ଚାଲିଗଲା ଆଉ କାହା ଘରେ ଲକ୍ଷ୍ମୀ ପାଦ ପକେଇବାକୁ ।

ତା'ପରେ ଅନେକ ଘଟଣା । ଗୋଟିକ ପରେ ଗୋଟିଏ ଘଟି ଯାଇଛି । ମୁଁ ଚାଳିଶିହୋଇ ଚାଲିଥାଏ । ମୋ ଜୀବନରେ ସେମିତି ନୂଆ କିଛି ନାହିଁ । 'ଏଇ 'ଶତ!' ଭଳି କମିତିକା ଏକାରକମିଆ । ମା' ମରିଗଲେ । ସେଇଟା ଗୋଟାଏ ଘଟଣା ଯାହାକି ମୋର ମନେ ଅଛି । ବାକି ସବୁ ଭସା ମେଘ ପରି ଭାସି ଯାଇଛି ।

ବେଶୀ ସମୟ ବାହାରେ କଟେ । ବେଳେ ବେଳେ ଘରକୁ ଆସେ । ସେ ଶତାବ୍ଦୀ ଉପରେ ନଜର ପଡ଼ିଯାଏ । ଚମକି ଉଠେ କାହାଘରକୁ ଚାଲି ଆସିଛି ।

ସାବି ଘର ଅନେକ ଦୂରରେ । ସାବି ଘର ବାନ୍ଧିଥିଲା । ମୋର ଘର କାହିଁ ।

ଦିନେ ହଠାତ୍ ଶୁଣିଲି, ସାବି ତା ଘରୁ ପଳେଇଛି । ଠିକ୍ ପଳେଇ ନଥିଲା । ତେବେ ମୁଁ ଲୋକେ ସେଇଆ କହିଲେ । ପ୍ରକୃତରେ ସେ ତା' ଗାଁ ଲେଖାରେ କେଉଁ ଭାଇ ସାଙ୍ଗରେ ଯାଇଥିଲା ତା' ସ୍ୱାମୀକୁ ଖୋଜିବାକୁ । ଲୋକେ ସେଇ ଭାଇକି ଲଗେଇ ତାକୁ କେତେ କଥା କହିଲେ ।

ସାବିର ସ୍ୱାମୀ କଲିକତାରେ ଥିଲା । ଛ ମାସେ ବର୍ଷେ ଥରେ ଘରକୁ ଆସେ । ମାସେ ପଖେ ରହି ଯାଏ । ମୁଁ ଭାବୁଥିଲି ସାବିର ସେ ଦିନଗୁଡ଼ିକ କେତେ ସୁଖରେ କଟୁଥିବ । ଆଉ ଯେଉଁଦିନ ତାର ସ୍ୱାମୀ ତା'ଠୁଁ ବିଦାୟ ନେଇ ଯାଉଥିବ ସେଇଦିନଠୁଁ ପୁଣି

ତ୍ରିପୁରବାଦନଙ୍କୁ କେଡ଼େ ଆଗ୍ରହ ଆନନ୍ଦରେ ଶୁଣୁଥିବ, ବସିଥିବ । ଆଉ ତା'ର ପ୍ରତୀକ୍ଷାକୁ ଭାବି ଭାବି ଦୂର ବିଦେଶରେ ତା' ସ୍ୱାମୀ କେଡ଼େ ଆନନ୍ଦ ପାଉଥିବ ।

ମୋର ସେ କଳ୍ପନା ମିଛ ହୋଇଗଲା । ସାବିତ୍ରୀର ସ୍ୱାମୀ ଆଉ ଫେରିଲା ନାହିଁ ।

ସେଦିନ ବି ଏ ଶତାଷ୍ଟା ଥାଏ । ଆଉ ଠିକ୍ ଏ ସପ୍ନ ଦେଖୁଥିଲି । ଛପରରୁ ଅଳପ ଗୋବର ପାଣିର ଛିଟା ପଡ଼ୁଥାଏ । ଆଗରୁ ଆଉ ଗୋଟିଏ ଦ'ଣ୍ଟା ଯାଗାରୁ ଝଡ଼ ଝଡ଼ି ଯାଉଛି ।

ସାବିତ୍ରୀର ଖଣ୍ଡେ ଟିପଣା ଆମ ଘରେ ଥିଲା । ମା' ଆଣି ପକେଇ ଥିଲେ ମୋ କୋଷ୍ଠି ସାଙ୍ଗରେ । ମୋର ମନେ ଅଛି, ତାହାକୁ ସେଦିନ କହିଥିଲା—ଏ ଗୋଟିଏ ସଚ୍ଚା କୋଷ୍ଠି । ମା' କହିଲେ, ହିଁ ଅଟିର ଗୁଣ୍ଡା ଜାଣି ନାଁ ଦେଇଛି ଦାସ ଘର ବନ୍ଧୁ ।

ସେ କୋଷ୍ଠିଟା ଥିଲା । ମୁଁ ସେଇଦିନ ତାକୁ ଠିକ ଠିକ କରି ଫିଙ୍ଗିଦେଲି ।

ଯୁଦ୍ଧ ଭିତରେ ଦିନାକେତେ ଗଡ଼ିଗଲା । କାନ୍ଥର ଛାତାଟା ସେମିତି ଥାଏ । ସହରରେ ଗୋଟେ ଶ୍ରମିକ ଗଣ୍ଡଗୋଳ ହେଲା । ମୋତେ ଆସିଲା ନିମନ୍ତ୍ରଣ । ଜେଲରୁ ଫେରିଲି ଏଇ କେଇଟା ଦିନ ହେଲା । ପୁଣି ଗୋଳମାଳ ଭିତରେ ପଡ଼ି ଏତେ ଝମେଲା ଭିତରେ ପଶିବାକୁ ଖୁବ୍ ବେଶୀ ମନ ବଳୁ ନଥିଲା । କିନ୍ତୁ ସେଇଟା ତ ଗୋଟେ ନିଶା । ନିଶା ଛାଡ଼ିଗଲାବେଳେ ଦିନ୍ତକ ପାଇଁ ମନେହୁଏ ଆଉ ଖାଇବି ନାହିଁ । ପୁଣି ଯେତେବେଳେ ହାତରେ ବୋତଲ୍ ପଡ଼େ, ଆଉ ଛାଡେ କିଏ !

ମୋ ପହଞ୍ଚିବା ପରେ ପରେ ହାଉଆଟା ଠିକ୍ ଏ ତାତି ଉଠିଲା । ମାଲିକମାନେ ଗୁଣ୍ଡା ଲଗାଇଦେଲେ । ଟେଲାଟା ମୋ ଉପରେ

ନବଷି ମୋ ପାଖ ଲୋକର ମୁଣ୍ଡଟା ଛଡୁ କଟ୍‌ଦେଲା । ରକ୍ତ ଫର୍‌ଫର୍ କ ବହି ଯାଉଥାଏ । ସଙ୍ଗେ ସଙ୍ଗେ ତାଙ୍କୁ ହାସପାତାଳକୁ ନେଇଗଲେ । ଆଉ ଦଶ ଜଣ୍ଙ୍କ ଆଘାତ ପାଇଲେ । ସଭା ଭାଙ୍ଗିଗଲା । ଲୋକେ ଛୁନ୍‌ଛନ୍ ହୋଇ ପଳେଇ ଗଲେ ।

ମୁ କୁଲି ବସ୍ତି ଆଡକୁ ବାହାରିଲି । ଅବସ୍ଥା ଦେଖିବାପାଇଁ । ଲୋକେ କାଲେ ସାହସ ହରେଇ ପକେଇବେ ।

ବସ୍ତି ଭିତରେ ବୁଲୁଛି । କହାଣି ନୁଙ୍ଗୁରା ଗଳି । ଜଣେ ଲୋକ ଆସି କହିଲା—ବାବୁ ସେ ଘରେ କିଏ ତମକୁ ଡାକୁଛି । ମୁଁ ବୁଲି ପଡ଼ି ସେ ଘରଆଡକୁ ଚାହିଁଲି, ମାଇପି ଟିଏ ଠିଆ ହୋଇଛି । ମୁଁ କାବା ହୋଇଗଲି ।

ଗଲି । ଘରଟା ଟିକିଏ ଭଲ । କୁଲିଙ୍କ ଘରଠୁ ଟିକିଏ ଫର୍‌କତ । ସୁନ୍ଦର ବ ।

ସାବି ଆସି ନଥିକନା ମୋ ଗୋଡତଳେ ପଡଟଲା । ଗୋଡରୁ ଧୂଳି ନେଇ ସେ ଯେତେବେଳେ ଉଠିଲା ମୁଁ ଚାହିଁ ପାରିଲି ନାହିଁ । ଖାଲି ଚାହିଁଦେଉଛି ଯାହା । ମଥାରେ ମେଞ୍ଚେ ସିନ୍ଦୁର । ସ୍ତ୍ରୀ ବୋଇଲେ ସେତକ । ଆଉ କଛି ନାହିଁ । ସ୍ତ୍ରୀହୀନ ଜୀବନର ସେଇତକ ସମ୍ବଳକୁ ଦାଣ୍ଡରେ ପକେଇ ତା'ର ତଳେ ଆପଣାର ଅବସାଦକୁ ଘୋଡାଇ-ବାର ଚେଷ୍ଟା କରୁଥାଏ ।

ଦନ ଦୁଇଟା ହେବ । ସକାଳୁ କଛି ଖାଇ ନାହିଁ । ୧୦ ଶୁଖିଯାଇଛି । ନଜେ କଳାକାଠ ପଡ଼ି ଯାଇଛି । କନ୍ତୁ ସାବି କାଳୀ ନୁହେଁ । ଆଖି ଧୂସର । ସେ ମଦର ନାହିଁ । ଖାଲି ପୂଜାର ଅର୍ଚ୍ଚନା ।

"ମୋତେ ଚହିଁପାରୁଚ ?" ସେ ପଚାରିଲା ।

ସେଦିନ ଘରୁ ବାହାରିଲାବେଳକୁ ଏଇ ମଣିଷଟା ଶତ୍ରୁ ଭାବି ଯାଉଥିଲି । ସେଦିନ ଏ ଶତ୍ରୁଙ୍କୁ ଶତ୍ରୁ ବୋଲି ଜାଣିଥିଲି । କାନ୍ଥରେ କିଏ ଚୂନ ଲେପିଦେଇଛି ବୋଲି ଭୁଲ କରୁନଥିଲି ।

ସେ ମୋତେ ବସିବାକୁ କହିଲା । ତା'ର 'ପ୍ରିୟ' ଆସିବାଯାଏ । ମୋତେ ଖାଇବାକୁ ବି କହିଲା ତାର ସମ୍ପର୍କରେ । ସେବା ଦ୍ଵାରା ସାରା ଗୃହ ବସିଥାଏ ତାର 'ସେ' ଆସିଲେ 'ତାଙ୍କୁ' ଖାଇବାକୁ ଦେଇ ତା'ପରେ ନିଜେ ବସିବ ।

ମୁଁ ଠିକ୍‌ଏ ବସିଲି । ତା' କଥା ଏଡ଼ିପାରିଲି ନାହିଁ । ମନ ଚଞ୍ଚଳ ହେଉଥାଏ । ଯିବାପାଇଁ ଯେତେ ନୁହେଁ ସେଠି ନ ରହିବା ପାଇଁ ବେଶୀ । ସେ ମୋତେ ଅନେକ କଥା ପଚାରୁଥାଏ ଏକା ବାହାରେ । ମୁଁ ତାଙ୍କୁ କିଛି ପଚାରି ପାରିଲି ନାହିଁ ।

ମୁଁ ଲକ୍ଷ୍ୟ କଲି, ତା' ମୁହଁରେ ସେ ଅଂଗ ସଙ୍କୋଚ ନାହିଁ । ମନେ ହେଲା ଯେମିତ ବଡ଼ ନିର୍ଭୀକ ହେଇଯାଇଛି । କିନ୍ତୁ ନିର୍ଲଜ ନୁହେଁ ।

କେତେବେଳେକେ ଗୋଟେ ମଣିଷ ଆସିଲା । ମୋଟା ପେଟା ଲୋକଟାଏ । ମଥାରେ ପଗଡ଼ି । ହାତରେ ଲାଠି । ସାବି ତାଙ୍କୁ ପରିଚୟ କରେଇଦେଲା ମୁଁ କିଏ ।

'ଭାଇ !'

ସେ ଲୋକଟା ମୋତେ ଦଣ୍ଡବତ କଲା । ଯେମିତ ଭାରି ବାଧ୍ୟ ପିଲାଟିଏ ।

କିନ୍ତୁ ସେ ତ ସାବିର ସ୍ଵାମୀ ନୁହେଁ । କିମ୍ବା ଯଉଁ ଭାଇ ସାଙ୍ଗରେ ଗାଁରୁ ପଳେଇ ଆସିଥିଲା ସେ ବି ନୁହେଁ ।

ସାବି ଦାଉଦ୍‌ଭୟଙ୍କ ଗ୍ଲେଟ ଗିନାଟିରେ ପାଣି ଟିକିଏ ଆଣି ତା ଗୋଡ ପାଖରେ ଦେଖେଇଲା । ସେ ଗୋଡ ଧୋଇ ଆସି ବୁଢ଼ା-ଅଙ୍ଗୁଳିକି ବୁଡ଼େଇ ଦେଲା ସେଥିରେ । ସାବି ତାକୁ ମୁଣ୍ଡରେ ମାରି ପିଇଦେଲା ।

ମୁଁ ସାବିକି ବୁଝୁଁ ନଥିଲି । ସେ ଲୋକଟାକୁ ବୁଝୁଁ ଥିଲି । ମୋ ତା' ଭିତରେ କେତେ ତଫାତ୍ । କିନ୍ତୁ ତଫାତ୍‌ଟା କେଉଁଠି ବୁଝିହେଉ ନଥାଏ ।

ସେଠୁ ଫେରି ଆସି ଶୁଣିଲି, ସେ ଲୋକଟା କୁଲି ସର୍ଦ୍ଦାର । ମାଲିକର ଡାହାଣ ହାତ । ମୋତେ ମାରିବାପାଇଁ ଲୋକ ଖଞ୍ଜେଇ-ଥିଲା ସେଇ ।

ତଥାପି ମୋର ତା ଉପରେ ରାଗ ହେଲାନାହିଁ । ସେ ସାବିର ସ୍ୱାମୀ ।

ତଥାପି ମୋର ମନେ ହେଲା—ସାବି ବାସ୍ତବିକ ସତୀ ସାବିତ୍ରୀ ।

ଏ ଶତାବ୍ଦୀ ?

ତମର ଯଦି ଇଚ୍ଛା ହୁଏ, ପୋଛିଦିଅ !

## ଘଟଣ

ଆମେ ଦୁଇଜଣ ଝିଅଟିକୁ ଇନ୍ଦିରାକୁ ଭଲ ପାଉଥିଲୁ । ଦୁଇଜଣ ଯାକ ଚାହୁଁଥିଲୁ ତାକୁ ପାଇବାକୁ, ତାକୁ ଆପଣାର କରିବାକୁ । ବିନୋଦ ଆଉ ମୁଁ ।

ଦୁହେଁଯାକ ଏକାଦିନେ ତାକୁ ଦେଖିଥିଲୁ । ସମୁଦ୍ରକୂଳରେ ବୋଧହୁଏ ସେଇଦିନ ସେଇଠି ଦୁହେଁଯାକ ଏକା ସାଙ୍ଗରେ ପ୍ରଥମ ଦର୍ଶନରେ—। ଇନ୍ଦିରା ସେମିତି ଝିଅ ।

ବିନୋଦ ଯାଏ ସମୁଦ୍ର କୂଳଆଡ଼କୁ ବୁଲି । ଆଗରୁ ବି ଯାଉ-ଥିଲା । କିନ୍ତୁ ସେଇଦିନ ପାଖରୁ ନିୟମିତ ।

ମୁଁ ଯାଏ ଦେଉଳକୁ । ଆଗରୁ ବି ଯାଉଥିଲି । କିନ୍ତୁ ସେଇଦିନ ପାଖରୁ କୌଣସି ଦିନ ବାଦ୍ ପଡ଼େ ନାହିଁ । ନିହାତି ଜରୁରି କାମ ନଥିଲେ ।

ବିନୋଦ ପ୍ରତିଦିନ ଯାଏ । ଦିନ୍ ସନ୍ଧ୍ୟାବେଳକୁ । ସେଇ ସମୁଦ୍ର କୂଳକୁ—ସେଇଠିକି । କିନ୍ତୁ ଦେଖାହୁଏ କ୍ୱଚିତ୍ । ବିନୋଦ କିନ୍ତୁ ଚାହିଁ ବସିଥାଏ ତା'ର ପଥକୁ । ସମୁଦ୍ରର ଢେଉ ଗଣୁଥାଏ କି କ'ଣ ! ହସେ କି କାନ୍ଦେ ସେଇ ଜାଣେ । ଯେଉଁଦିନ ସେ ଟଳିଁଲ ଫେରି ଆସେ ମୁଁ ବୁଝିପାରେ ଯେ ସେଦିନ ସେ ଇନ୍ଦିରାକୁ ଦେଖିଛି । ସେତେବେଳକୁ ସନ୍ଧ୍ୟା ହୋଇ ନଥାଏ ।

ଦେଉଳରେ ସନ୍ଧ୍ୟା ଆରତି ହୁଏ । ମୁଁ ଠାକୁରଙ୍କୁ ଚାହିଁ ରହେ, ପ୍ରଣାମ କରେ । ମନେହୁଏ, ମୋ ସାଙ୍ଗେ ମୋ ବାଁ ପାଖରେ

ଆଜି ବି କଏ କହେ ଯେମିତି ପ୍ରଣାମ କରୁଛୁ ଆସି । ଦୁହିଙ୍କ ଉପରେ ଆକାଶରୁ ପୁଷ୍ପ ବୃଷ୍ଟି ହେଲପରି ଲାଗେ । ଚନ୍ଦନକୁ ଗୋଳା ବୋଲି ଦେଲପରି ପ୍ରେମ ମୂଳ ଫୁଲ୍‌ ପଡ଼େ । ଯେଉଁଦିନ ମୁଁ ଡ଼େଙ୍ଗରେ ଘରକୁ ଫେରେ, ସେଦିନ ମୋର କାହିଁକି କଜାଣି ପ୍ରଥମରୁ ଯେମିତି ମନେହୁଏ ଆଜି ମୁଁ ଏକା ଏକା । ସେ ଆସି ନାହିଁ । କେହି ଆସି ନାହାନ୍ତି । ମୋ ସାଙ୍ଗରେ କେହି ଠାକୁରଙ୍କୁ ଦଣ୍ଡବତ କରିନାହାନ୍ତି । ମୁଁ ବେଢ଼ା ଭିତରେ ବୁଲେ । ଡ଼େରି ହୋଇଯାଏ ।

ମୋର ଆଗେ ଶଙ୍କା ହେଲା । ସେଦିନ ଭିଡ଼ ଭିତରେ ମୁଁ ବାଟ କରି ଦେଇଥିଲି । ଇନ୍ଦିରାର ମା ଓ ବାପା ଦିହେଁଯାକ ଥିଲେ । ମୋତେ ସେମାନେ କହିଥିଲେ ବେଳ ହେଲେ ତାଙ୍କ ସେଠିକି କେବେ କେମିତି ବୁଲି ଆସିବାକୁ । ଇନ୍ଦିରା ମୋତେ କିଛି କହି ନଥିଲା । ମୁଁ ବି କିଛି କହି ପାରି ନଥିଲି । ସେ ମୋତେ ଚାହିଁଥିଲା । ମୁଁ ବି ତାକୁ ଚାହିଁଥିଲି । ଏକା ସାଙ୍ଗରେ । ସେମିତି ଥରୁଟେ । କିନ୍ତୁ ଆମ ଦୁହିଙ୍କର ଶଙ୍କା ଦେଇଥିଲା ପରି ମୋତେ ଲାଗିଲା । ଅନେକ ଦିନର ଲଜ୍ଜା ।

ବିନୋଦ ଦିନେ ଯାଇଥିଲା ମୋ ସାଙ୍ଗରେ । ଏମିତି ବୁଲି ବୁଲି । ମୋର ବନ୍ଧୁ ଭାବରେ । ସେଠି ଯାଇ ବିନୋଦ ଏକ ନୂଆ ବିନୋଦ ହୋଇଗଲା । ମୁଁ ତାକୁ ସେମିତି ପୁରୁଣାରେ କେବେ ଦେଖି ନଥିଲି ଆଗରୁ । ତାର ଯୋଗ୍ୟତା ଦଶଗୁଣ ବଢି ଯାଇଥିଲା ପରି ଲାଗିଲା । ସେ ବୋରିବୋରି ଜମେଇ ରଖିଥିଲା ଆସରକୁ । ନିଜର ଉପସ୍ଥିତିର ପ୍ରାଧାନ୍ୟ ସେ ସବୁବେଳେ ଜାହିର କରି ରଖିଥାଏ ଅନ୍ୟ ଉପରେ । ତା କଥାର ପ୍ରତିବାଦ କରିବାପାଇଁ ସେ କାହାକୁ ସୁଯୋଗ ଦିଏନାହିଁ । ସେଦିନ ତା' କଥାର ପ୍ରତ୍ୟେକ ପଦ ଯେମିତି ଅନ୍ୟଙ୍କୁ ବାଧ୍ୟ କରୁଥିଲା ମାନି ନେବାପାଇଁ ।

ମୁଁ ଯାଏ । ବିନୋଦ ଯାଏ । ଇନ୍ଦିରା ଘରେ ଆମ ଦୁହିଙ୍କର ଭେଟ ହୁଏ କମ୍ । କିନ୍ତୁ ସେ ଜାଣେ ମୁଁ ଯେବେ ଯାଏ । ସେ ଗଲେ ମୁଁ ସବୁବେଳେ ଜାଣିପାରେ ନାହିଁ । ଜାଣିବାର ଇଚ୍ଛା ମଧ୍ୟ ରଖେ ନାହିଁ ।

ମୁଁ ଯାଇଁ ଇନ୍ଦିରାର ମା, ଇନ୍ଦିରାର ଭାଇ ଏମାନଙ୍କ ସାଙ୍ଗରେ କଥା ହୁଏ । ଇନ୍ଦିରାର ଛୋଟ ଛୋଟ ଭଉଣୀ ଦୁଇଟି ଆସି ମୋ ଉପରେ ଲଦି ହୁଅନ୍ତି । ମନେହୁଏ, ଇନ୍ଦିରା ଶହେଜଣ ହୋଇ ମୋ ଚାରିଆଡ଼େ ମୋତେ ଘେରିଯାଇଛି । ମୋତେ କଥା ନ କହିଲେ କ'ଣ ହେଲା । ମୋ ଠାରୁ ଦୂରରେ ରହିଲା ତ କ'ଣ ହେଲା । ସେ କାନ୍ଥ ବାଡ଼ ଟେବୁଲ ଚଉକି ଚାରିଆଡ଼େ ଇନ୍ଦିରାର ସାନ୍ନିଧ ମୁଁ ଉପଲବ୍ଧି କରେ ।

ଇନ୍ଦିରା ନଥାଏ । କାମ କରୁଥାଏ । ସବୁବେଳେ କାମ, କାମ! ମୁଁ ଚାହିଁ ଦେଖେ । ମନେହୁଏ ସେ କାମରେ ଯେମିତି ଗୋଟେ ଅନୁରାଗ ଅଛି । ସେ କାମଟା ବି ମୋର ପାଇଁ—ମୋ'ର ଉଦ୍ଦେଶ୍ୟରେ ।

ବେଳେ ବେଳେ କେତେବେଳେ କ୍ୱଚିତ ଆସେ । ପାଖରେ ଚଉକିଟି ଉପରେ ବସେ । ମୁଁ କହେ ବସିବାକୁ । ସେ ବସେ । ସେଇ ଢେର । ତାଠୁ ମୋର ଯେମିତି ବେଶୀ କିଛି କହିବାର ନଥାଏ । ଆଉ କିଛି କହିପାରେ ନାହିଁ । ସେ ଚାଲିଗଲେ ମନେହୁଏ ଆହୁରି କ'ଣ ରହିଗଲା ପରା ! ଭାବେ, ମୁଁ ବୋଧହୁଏ କହିଛି । କିନ୍ତୁ ସେ ବୁଝିପାରିଲା ନାହିଁ । ଆମ ଦୁହିଁଙ୍କର ମନ ଏକ, କିନ୍ତୁ ଭାଷା ଯେମିତି ଦୁଇଟା । କେହି କାହା ମନ କଥା ବୁଝାଇ କହି-ପାରେ ନାହିଁ ।

ସେ ପାଖରେ , ବସିଥିଲେ ମୋତେ ମାଡ ପଡ଼େ । ହାଲୁକା ମନଟା ଟଳଟଳ ହେଉଥାଏ—ଥିର ହୋଇଯାଏ ସେ ଭାଗରେ । ମଝିରେ ମଝିରେ ମୁଁ ତାକୁ ମଥାଟେକ ଗୁହେଁ । ସେ ତଳକୁ ମୁହଁ ପୋତି ବସିଥାଏ । ବେଳେ ବେଳେ ଗ୍ରୁର ଆଖିର ଭେଟ ହୋଇ-ଯାଏ । ମୋର ସବୁ ସାର୍ଥକ ହୋଇଗଲା ପରି ଲାଗେ । ଅନେକ ଅବୁଝା କଥା ବୁଝି ହୋଇଯାଏ ।

ବିନୋଦ ଯେତେବେଳେ ଯାଏ, ଗୋଟା ଘରଟା ତାର ଉପ-ସ୍ଥାନ ପକାଏ । ସମସ୍ତେ ସରବ ହୋଇ ଉଠନ୍ତି । ଇନ୍ଦିରାର ଭାଇ ଭଉଣୀ ସମସ୍ତେ । ବିନୋଦର ପ୍ରତି ଅଙ୍ଗରେ ତରଙ୍ଗ ଖେଳିଯାଏ । ସେ ଉତଲା ହୋଇ ଉଠେ । ତା ଦେହର ତେଜ ଯେମିତି ଯାଇ ବାଜେ ଇନ୍ଦିରା ଦେହରେ । ଇନ୍ଦିରା ଚଞ୍ଚଳ ହୋଇ ଉଠେ । ସଜାଗ ହୋଇ ଉଠେ । ଆପଣାକୁ ଆପଣାର ଆୟତ୍ତ ଭିତରେ ରଖି ପାରେ-ନାହିଁ । ପେଜ ହାତରେ ଢାଳି ହୋଇଯାଏ । ଫୁଟିଲା ପୋଟଣି ଫୁଟିକରି ମୁହଁ ଉପରେ ପଡ଼େ । ପାନ ଥାଳିଆ ଖସିପଡ଼େ ହାତରୁ । ତୋଳା ଯୋଡ଼ାକ ଖାଲି କଣକୁ କଣକୁ ଖସି ବୁଲୁଥାଏ । ଓଠ ଫାଙ୍କରେ ହସର ରେଖା କିଏ ବଙ୍କାକରି ଗାରେ ଟାଣିଦେଇଛନ୍ତି ଯିମିତି ।

ଦୁହେଁ ବସି କଥା ହୁଅନ୍ତି । ଖୁବ୍ ଧୀରେ । ନାଁ ସେ କଥାର ନିୟମ ନାହିଁ । ଶୃଙ୍ଖଳା ନାହିଁ । ଖାଲି ବସି ବସି ନୁହେଁ । ବାଟରେ ଘାଟରେ, ଘରର ଦୁଆରେ ବାହାରେ, 'ଯାଉ ଯାଉ, 'ଉଠୁ ଉଠୁ ସେ ହଠାତ୍ ଆରମ୍ଭ ହୁଏ ପୁଣି ହଠାତ୍ ଶେଷ ହୁଏ । ମୁଖବନ୍ଧ ନଥାଏ କିମ୍ବା ମନ୍ତବ୍ୟ ନଥାଏ । ଯେଉଁଠି ପାରେ ସେଇଠି ଆରମ୍ଭ ହୁଏ, ଯେଉଁଠି ପାରେ ସେଇଠି ଶେଷ ହୋଇଯାଏ । ନଥାକର ଅରମ୍ଭ କରିବାକୁ

ଟଡ଼େ ନାହିଁ । ଯେତେବେଳେ ଆରମ୍ଭ ହୁଏ, ସେ ଯେମିତ ଆରମ୍ଭ ନୁହେଁ—ଅଗ କଥାର ଜେର । ଅଥଚ ଯେତେବେଲେ ସରେ ସେତେବେଲେ ସରଯାଏ ଏକାବେଲକେ ପୂର୍ଣ୍ଣଚ୍ଛେଦ ପକେଇ, ସେକଥା ଆଉ ଯେମିତ ପୁଣି ଥରେ ଉଠିବ ନାହିଁ । ମା ତା ର ଦଅନ୍ତି । କଥାର ଖିଅ ଛୁଟିଯାଏ ।

ବିନୋଦ ଯାଇ ଇନ୍ଦିରାର ମା'ଙ୍କ ପାଖରେ ବସେ । ଇନ୍ଦିରା ବି ବସିଥାଏ । ବୁହେଁ ଯେମିତ ତାଙ୍କ ପାଖରେ ଦୁଇଟି ଛୁଆ । ସେ ଇନ୍ଦିରାକୁ ମାରେ । ଇନ୍ଦିରାକୁ ପେଲିଦିଏ । ପୁଣି କୁଣ୍ଢେଇ ପକେଇ ସାଲୁଲେଇ ବହଲେଇ ପକାଏ । ତାଙ୍କର ଆଗରେ

ମୁଁ ଯାଏ । ଘଣ୍ଟା ଅସେ ପତ୍ରିକା କି ବହି ଗଣ୍ଡେ । ଭଲ ଭଲ ଯାଗାରେ ମୋର ଚିହ୍ନ ଥାଏ—ଟିପଣୀ ଥାଏ । ଭାବେ ଇନ୍ଦିରା ପଢିବ । କେବେ କେବେ ବହି ମାଗିବାକୁ ଭୁଲି ବି ଯାଏ ।

ବିନୋଦ ଯାଏ । ଇନ୍ଦିରାକୁ ସାଙ୍ଗରେ ନେଇ ଅସିବା ପାଇଁ । ସିନେମା ଦେଖିବାକୁ, ସମୁଦ୍ରକୂଳ ବୁଲି ଯିବାକୁ ।

ସେତେବେଳେ ହୁଏତ ଠାକୁରେ ମୋ ପ୍ରଶଂସା ନେଉଥାନ୍ତି ।

ମୁଁ ଯାଏଁ ଖାଲି ହାତରେ । ଫେରି ଅସେ ଭରା ହୃଦୟ ନେଇ । ବିନୋଦ ଯାଏ ଉପହାର ନେଇ, ଫେରି ଅସେ ଫୁଲ ପରି ହାଲୁକା ପ୍ରାଣରେ ।

ମୁଁ ଫେରି ଅସି କବିତା ଲେଖେ । ସେ କବିତା କେହି ପଢ଼ନ୍ତି ନାହିଁ । ଧୀରେ କି ଛିଡ଼ାଇ ଦିଏ । ବିନୋଦ ଫେରି ଅସେ ଘରେ ବସି ଚିଠି ଲେଖିବାପାଇଁ । ତାର ଅନୁପସ୍ଥିତିର କଇଫିୟତ୍ ଦେବା-

ପାଇଁ । ଇନ୍ଦିରା ପାଖରେ ନିରନ୍ତର ଥିବା ସମସ୍ତଙ୍କର ଗୋଟାଏ ଶୁଦ୍ଧ ଚେତନା ଦୂର ହୋଇପାରେ ନାହିଁ ।

ବିନୋଦ କହେ ମୋ ଆଗରେ—'ଇନ୍ଦିରା ମୋତେ ଭଲ ପାଏ ।' ଭାରି ସରଳ ପିଲା ସେ ।

ମୁଁ ଭାବେ ମୋ'ର ମନ ଭିତରେ—'ନା, ଇନ୍ଦିରା ମୋତେ ଭଲ ପାଏ ।' କାହାରିକି କହିପାରେ ନାହିଁ ।

ଇନ୍ଦିରା ବିନୋଦକୁ ଥଟ୍ଟା କରେ । ବିନୋଦ ମଧ୍ୟ ରହସ୍ୟ କରେ । ଇନ୍ଦିରା ପଚାରେ—"ତମ କନିଆ କିମିତି ହବ କହିଲ ବିନୋଦ ଭାଇ !" ବିନୋଦ କହେ—'ତୋ'ରି ପରି ।' ଇନ୍ଦିରା ହସେ । ବିନୋଦ ତାକୁ ପାଖକୁ ଭିଡ଼ି ଆଣି ତାର କୁଞ୍ଚିତକେଶର କୋମଳ ସ୍ପର୍ଶ ଆପଣା ଗଣ୍ଡର କୂପ ମୂଳରେ ଅନୁଭବ କରେ । ଇନ୍ଦିରା ଆପଣାକୁ ଛଡ଼େଇ ନେଇ ପଳାଏ । ବିନୋଦ ଧରିନିଏ ହାତକୁ । 'ହାତଗଣ୍ଠି ପଡ଼ିଗଲା କି ?' କହି ଇନ୍ଦିରା ହସି ପକାଏ । ବିନୋଦ ଛାଡ଼ିଦିଏ ।

ବିନୋଦ ଭାବେ, ଇନ୍ଦିରା ବାସ୍ତବିକ୍ ତାକୁ ଭଲ ପାଏ । ଇନ୍ଦିରା ତାକୁ ଆପଣାର କରିବାକୁ ଚାହେଁ ।

ମୁଁ ଭାବେଁ, ଭାବେନାହିଁ ବରଂ ମନକୁ ବୁଝାଏ । ଇନ୍ଦିରା ବିନୋଦକୁ ଭଲ ପାଏ ନାହିଁ—କେବେ ନୁହେଁ । ବରଂ ପରିହାସ କରେ । ଭଲ ପାଇବାଟା ଥଟ୍ଟା ତାମସାରେ ପ୍ରକାଶ ପାଏନାହିଁ । ଭଲ ପାଇବାଟା ଭସା ମେଘଭଳି ହାଲୁକା ନୁହେଁ । ଭଲ ପାଇବାଟା ଗୁରୁ ଗମ୍ଭୀର ।

ମୁଁ ଗଲେ ଇନ୍ଦିରା ଗମ୍ଭୀର ହୋଇଯାଏ । ଭାବେ, ଏଇଟା ପ୍ରକୃତ ପ୍ରେମର ଲକ୍ଷଣ । ପ୍ରଣୟର ଗଭୀରତା, ଗୋପନୀୟତା । ବିନୋଦକୁ ସେ ଯଦି ଭଲ ପାଉଥାଏ ତେବେ ସେଥିରେ ବିଶ୍ୱସ୍ତତା ନଥିବ । ଯୌବନର ସାମାନ୍ୟ ଉଦ୍ଦୀପନା ହୋଇପାରେ ।

ଦିନକର କଥା । ବିନୋଦ ମୁଁ ଦୁଇଜଣଯାକ ପହଞ୍ଚିଲୁ । ଇନ୍ଦିରା ବସିଥିଲା । ଆମକୁ ଦେଖି ଠିଆ ହୋଇ ପଡ଼ିଲା । ବିନୋଦ ଆଗକୁ ବଢିଯାଇ ଇନ୍ଦିରାର ହାତ ଧରି 'ଶେକ୍‌ହେଣ୍ଡ' କଲା । ମୁଁ ନମସ୍କାର କରିବାକୁ ଅପେକ୍ଷା କରୁଥିଲି । ଢେର ନସହି ନିଜେ ନମସ୍କାର କଲି ଆଗେ । ହାତରେ ଥାଏ ସିଲେଇ ସରଞ୍ଜାମ । ରୁମା-ଲିରେ ପଡୁଥିଲା ବିନୋଦର ନାମ । ମେସିନର ହାତ ପରି ହାତ ଦୁଇଟା ତାର ଅଳ୍ପ ଉପରକୁ ଉଠି ପ୍ରତିଭଦ୍ରତା ଜଣାଇଲା ।

ଅନେକ କଥାଭାଷା ହେଲା । ମୁଁ କହିପାରିବି ନାହିଁ କି କଥା । ଯା ଭିତରେ ବିନୋଦ ଉଠି ଚାଲିଗଲାଣି । କଥାର ସୁଅ ବନ୍ଦ ହୋଇଯାଇଛି । ଇନ୍ଦିରାର ସାନ ଭଉଣୀ ତଳେ ବସି କୁଣ୍ଢେଇକି ଲୁଗା ପିନ୍ଧେଇ ଦେଉଥାଏ । ମୁଁ ନିରର୍ଥକ ତାକୁଇ ଚାହିଁଛି ।

'ଆ ସୁରମା, ମୁଁ ଆସୁଛି ଏଇନେ ।'

ମୁଁ ଚାହିଁ ଦେଖିଲି ଇନ୍ଦିରା ଉଠୁଛି । ବସିବାକୁ କହିପାରିଲି ନାହିଁ । କେଉଁଠିକି ଯାଉଛ, ପଚାରି ପାରିଲି ନାହିଁ, ସେ ଚାଲିଗଲା ।

ମୃତ୍ୟୁ ଭିତରେ ଯେଉଁ ଯାଗାର କ୍ଳାନ୍ତି ଆଉ ଦୁର୍ବଳତା ମଣିଷକୁ ଅଚେତ ନିଦରେ ଶୋଇ ପକାଏ ସେଇ ଯାଗାଟା ଖୁବ୍ ଚଞ୍ଚଳ ଆଉ କ୍ରିୟାଶୀଳ ହୋଇଗଲା ପରି ଲାଗୁଥିଲା । ବାକୀ ଦେହଟା ସାରା ହାଲିଆ ହୋଇ ପଡ଼ିଛି ।

ସେଦିନ ରାତିରେ ମୁଁ ଶୋଇନାହିଁ । ନିଦ ହେଉନାହିଁ । ଠିକ୍ ଇନ୍ଦିରା କଥା ଭାବୁ ନଥିଲି । କେବେ କେବେ ଇନ୍ଦିରା ଆସି ଠିଆ ହୋଇଯାଏ । ମୁଁ ତାକୁ ନଗ୍ରହିଁଲା ପରି ମନଟାକୁ ଫେରେଇ ନିଏ । କ'ଣ ଯେ ଗୁଡ଼ାଏ ଭାବୁଥିଲି ଠିକ୍ ନାହିଁ, ଶିଅ ନଥିଲା । ଅଡୁଆ ସୂତା ପରି ।

ଦୁଃଖେ ନୁହେଁ, ଅଧେ ନୁହେଁ, ତନ୍ଦ୍ରାଦନ ଧରି ନିଦ କୁଆଡ଼େ ଉଡ଼ିଗଲା । ମନେ ହେଲା, ମୁଁ ପାଗଳ ହୋଇଯିବି । କିନ୍ତୁ ଏ ଅବସାଦର କାରଣ କ'ଣ ? ଇନ୍ଦିରା ! ମୋତେ କ୍ଷମା କରିଦିଅ ! ଯାଉ !

ପଳେଇଗଲି ସେଠୁ । ବିନୋଦ ଚିଠି ଦେଇଥିଲା ; ମୁଁ ଲେଖି-ଥିଲି ଭଲ ଅଛି । କେତେଦିନ ପରେ ତା'ର ଚିଠିରୁ ଖବର ପାଇଲି, ତା'ର ବାହାଘର ।

ଦୁହିଙ୍କ ପାଖକୁ ବିବାହ ଉପହାର ଦେଇ ପଠାଇଲି, ଅଲଗା ଅଲଗା । ଜବାବ୍ ଆସିଥିଲା ଏକା ସାଙ୍ଗରେ 'ଧନ୍ୟବାଦ !'

ସେ 'ଧନ୍ୟବାଦ'ଟା ଏବେ ବି ସାଇତି ରଖିଛି । ମୁଁ ତାର ନୂଆ ଅର୍ଥ କରେ—ଭଲ ପାଇବାଟା ସ୍ୱପ୍ନ ନୁହେଁ ସତ୍ୟ ।

# ଛାୟାରେ ମାୟା

ଶ୍ରୀମତୀ ସାଧନା ମୋତେ ହଠାତ୍ ଖଣ୍ଡେ ତାର ପଠେଇଲେ— ଶୀଘ୍ର ଆସ, ମୋର ବଡ଼ ବିପଦ । ମୁଁ ଅସୁସ୍ଥ ଥିଲି । ସେ ଜାଣନ୍ତି । ତଥାପି ତାର କରିଛନ୍ତି । ବାଧ୍ୟ ହୋଇ ଗଲି ।

କିନ୍ତୁ ପହୁଞ୍ଚି ଦେଖିଲି ଦେହ ଓ ମନରେ ସେ ସମ୍ପୂର୍ଣ୍ଣ ସୁସ୍ଥ । ସେ କହିଲେ—ମୋର ଦେହ ଭଲ ନଥିବାରୁ ସେ ମୋତେ ତାଙ୍କ ପାଖରେ ରଖି ଉପଯୁକ୍ତ ଚିକିତ୍ସା ଯତ୍ନ କରିବାକୁ ଚାହାନ୍ତି । ମୁଁ ଭଲ ନହେବାଯାଏ ସେ ମୋତେ ଛାଡ଼ିବେ ନାହିଁ । ସତ କଥା କହି ଅନୁରୋଧ କରିଥିଲେ ମୁଁ ଆସି ନଥାନ୍ତି । ତେଣୁ ମିଥ୍ୟାର ଆଶ୍ରୟ ନେବାକୁ ପଡିଛି ।

ସାଧନାଙ୍କ ସହିତ ମୋର ଖୁବ୍ ବେଶୀ ନିକଟରେ ରହିବାର ସୁଯୋଗ ଘଟିଥିଲା । ଦୁଇ କିମ୍ବା ତିନିଥର ଦେଖା ହୋଇ ପୂର୍ବରୁ । କିନ୍ତୁ ଅଳ୍ପ ସମୟ ଭିତରେ ସେ ମୋତେ କିମିତି ଆପଣାର କରି ନେଇ ପାରିଥିଲେ । ଭାବିଥିଲି ହୁଏତ ସେଇଟା ତାଙ୍କର ଗୁଣ ।

ସେ ମୋତେ ଭଲ ପାଆନ୍ତି ଏକଥା ମୁଁ ଦମ୍ଭକରି କହିପାରିବି ନାହିଁ । କେବଳ ଥରେ ସେ ମୋତେ କଥାରେ କଥାରେ କହିଥିଲେ, 'ନିର୍ମଳବାବୁ, (ଏନ୍) 'ଅକ୍ଷରଟା ମୋତେ ଭାରି ଭଲ ଲାଗେ ।' ଏଇଟାକୁ ପ୍ରେମର ସୂଚନା ବୋଲି ଗ୍ରହଣ କରିବାକୁ ମୁଁ ପ୍ରସ୍ତୁତ ନଥିଲି ।

ସେତେବେଳେ ସେ ପଢୁଥିଲେ । ବର୍ତ୍ତମାନ ସରକାରୀ କର୍ମ-ଚାରୀ । ଏବେ ବି କୁମାରୀ ଅଛନ୍ତି । ମୁଁ ମଧ୍ୟ ଅବିବାହିତ ଯୁବକ ଆମ୍ଭମାନଙ୍କ ଭିତରେ ଏତେଦୂର ସୌହାର୍ଦ୍ଦ୍ୟଟା ବାହାରକୁ ଅସୁନ୍ଦର ଦିଶିପାରେ ବୋଲି ମୋର ଭୟଟାକୁ ସେ ହସନ୍ତି । ସେ ହସରେ ନିର୍ଭୀକତା ଥାଏ । ସେଥିପାଇଁ ମୋର ତାଙ୍କ ଉପରେ ଭରସା ଥାଏ । ବୟସରେ ଜ୍ୟେଷ୍ଠ ହେଲେ ବି ମୁଁ ତାଙ୍କୁ ମାନେ ।

ଦିନ କେଇଟା ଭିତରେ ସତକୁ ସତ ମୁଁ ସ୍ୱାସ୍ଥ୍ୟର ପରିବର୍ତ୍ତନ ବେଶ ବୁଝିପାରିଲି । ସେ ଅଫିସରୁ ଫେରିଲେ ସନ୍ଧ୍ୟାବେଳେ ସାଙ୍ଗରେ ବୁଲିଯାଉଁ—ଅନେକ କଥା ପଡ଼େ । ରାତିରେ ସେ କାମ କରନ୍ତି । ଖାଇବାବେଳେ ଓ ଖାଇ ସାରିବା ପରେ ଶୋଇବା ପୂର୍ବରୁ ପୁଣି ଆଲୋଚନା ଚାଲେ । ମନେହୁଏ, ଯେମିତି ନିତ ନୂଆ ନୂଆ କଥା । ସକାଳେ ନିତ୍ୟକର୍ମ ପରେ ଏକାଠି ବସି ଖବରକାଗଜ ପଢ଼ାଯାଏ । ରାଜନୈତିକ ଯୁକ୍ତି । ବଡ଼ ଶୃଙ୍ଖଳ ଲାଗେ ମୋତେ ।

ଏତେ କଥାବାର୍ତ୍ତା ଭିତରେ ଦିନେହେଲେ ମୁଁ ସାମାନ୍ୟ ସନ୍ଧାନ ବି ପାଇ ନଥିଲି ଯେ ତାଙ୍କ ମନ ଭିତରେ କେଉଁଠି ଠାଏ ଆଘାତ ଅଛି । ସେ ଯେ କାହିଁକି ଆଜିଯାଏ ଅବିବାହିତା ଅଛନ୍ତି ମୁଁ ସେକଥା ପଚାରି ପାରେ ନାହିଁ ।

ଦିନେ ସେ ମୋତେ ପଚାରିଲେ—"ଆପଣ କେବେ ବିବାହ ହେଉଛନ୍ତି ?"

ମୁଁ କହିଲି—"କହି ପାରୁ ନାହିଁ ।"

"ଆପଣ ବିବାହ ହୋଇ ପଡ଼ନ୍ତୁ, ଆପଣଙ୍କ ଦେହ ଠିକ୍ ହୋଇଯିବ ।" ସେ କହିଲେ । ମୋତେ ବଡ଼ ହସ ମାଡ଼ିଲା । ମୁଁ ଭାବି

ଜୋରରେ ହସିଲି । ସେ କିନ୍ତୁ ଗମ୍ଭୀର ହୋଇ କହିଲେ—"ଥଟ୍ଟା ନୁହେଁ, ଆପଣଙ୍କ ଯତ୍ନ ନେବା ଲୋକର ଅଭାବ ।"

"ଆପଣ ତ କାହାରି ବିନା ଯତ୍ନରେ ସୁସ୍ଥ ଅଛନ୍ତି !" ମୁଁ ପଚାରିଲି ।

"ମାଇପି ଲୋକଙ୍କର ଏମିତି ମାଉଁସ ଲାଗେ । ଦୁଃଖରେ ବି ତାଙ୍କର ଗଣ୍ଡି ବଢ଼େ ।"

ଏଇ କଥାରୁ କେମିତି ବୁଝିଥିନ୍ତି ଯେ; ସତ ସତ ତାଙ୍କ ଭିତରେ ଗୋଟେ ଦୁଃଖ ଥିଲା ବୋଲି ।

ସେ ଯେଉଁ ଘରେ ଶୁଅନ୍ତି ମୁଁ ତା' ପାଖ ଘରେ ଶୁଏ । ଦିନେ ରାତିରେ ମୋ ନିଦ ଭାଙ୍ଗିଗଲା । ସବୁଦିନେ ଅଜଣା ଥାଏ, ଦୈବାତ୍ କାହିଁକି ସେଦିନ ମୋ ଘରୁ ତାଙ୍କ ଘରକୁ ଯିବାର ଦୁଆରଟା ମୁକୁଳା ଥିଲାପରି ଲାଗିଲା । ତାଙ୍କ ଘର ଅନ୍ଧାର ଥିଲା । ମୋ ଘର ଲଣ୍ଠନଟା ଏତେ ମିଞ୍ଜି ମିଞ୍ଜି ଜଳୁଥିଲା ଯେ କେବଳ ଜଳୁଛି ବୋଲି ଲଣ୍ଠନର ଗୋଟାଏ କଣରୁ ଚାହିଁଲେ ବୁଝାପଡ଼ିବ ।

ମୁଁ ଦେଖିଲି, ସାଧନାଙ୍କ ଝରକା ପାଖରେ ଗୋଟାଏ ଛାୟା ମୂର୍ତ୍ତି । ମୋତେ ଭାରି ଡର ମାଡିଲା । ମନରେ ନାନା ସନ୍ଦେହ ବି ହେଲା । ମୁଁ ଯାଇଁ ଲଣ୍ଠନ ତେଜାଇ ଦେବି ଏ ସାହସ ବି ମୋର ନଥିଲା ।

ମୂର୍ତ୍ତିଟା କ୍ରମେ ହଲିଲା ପରି ମନେ ହେଲା । ନିଶ୍ୱାସ ମାରିଲା ପରି ଲାଗିଲା । ସେ ନିଶ୍ୱାସଟା ଯେମିତି ମୋ ଉପରେ ଆସି ବାଜିଲା । ମୁଁ ଚମକି ପଡ଼ିଲି । ଭାବିଲି ସେଟା ପବନ ।

ଧୀରେ ଧୀରେ ମୂର୍ତ୍ତି ଟୋଟିଏ ତାଙ୍କ ପାଖକୁ ଗଲା । ଧୀର୍ ଅସ୍ତ୍ରେ ତାଙ୍କଠା ଯେମିତ ଅପେ ଖୋଲି ହେଇଗଲା । ତାପରେ ତାଙ୍କଠା ପୁଣି ବନ୍ଦ ହେଇଗଲା । ମୂର୍ତ୍ତିଠା ପୁଣି ତାର ନିଜ ସ୍ଥାନକୁ ଗ୍ଭଲିଗଲ ହାତରେ କ'ଣଠାଏ ଥିଲାପରି ଲାଗିଲା ।

ମୋର ଭ୍ରୂର ଭୟ କମେ ଗ୍ଭଲିଗଲା । ମନେ ହେଲା, ଗୋଠାଏ ଭୂତ କି କ'ଣ ! ସାଧନାଙ୍କ ବିଛଣା ପାଖରେ ଥିଲା ତେଣିକି ଗ୍ଭହିଁ କିଛି ଜାଣି ପାରିଲି, ସେ ସେଠି ନିଶ୍ଚିନ୍ତରେ ଶୋଇଛନ୍ତି କି ନାହିଁ ।

ମୂର୍ତ୍ତିଟି ଧୀରେ ଧୀରେ ମୋ'ର ଘର ଦୁଆର ଆଡ଼କୁ ଆସିଲା । ଡରେ ମୋ ଆଖି ବନ୍ଦ ହେଇଗଲା । ଗ୍ଭହିଁବାକୁ ଆଉ ସାହସ ହେଲା ନାହିଁ । କିଛିକ୍ଷଣ ପରେ ମୋର ମନେ ହେଲା ମୋ ମୁହଁ ଉପରେ ଯେମିତି କାହାର ନିଶ୍ୱାସ ବାଜୁଛି,—ଭାରି ଗରମ । ମୁଁ ଚମକି ପଡ଼ିଲି । ନିଶ୍ୱାସଠା କୁଆଡ଼େ ଉଡିଗଲା ପରି ଜଣାହେଲା । କେତେ-ବେଳେକେ ମୁଁ ଆଖି ଧୀରେ ଧୀରେ ଖୋଲିଲି । ଗ୍ଭରିଆଡ଼କୁ ଗ୍ଭହିଁ ଦେଖିଲି—ଆଉ କେଉଁଠି କିଛି ନାହିଁ ।

ମୁଁ ପୁଷ୍ପାଙ୍କୁ ଡ଼ାକିଲି । ସାଧନା ଉଠି ଆସିଲେ । ପଗ୍ଭରିଲେ, କ'ଣ ? ଡର ମାଡୁଛି ?

ମୁଁ କହିଲି—'ନା' । ମିଛରେ ।

"ଆଉ କାହିଁକି ଡ଼ାକିଲେ ପୁଷ୍ପାଙ୍କୁ ?"

"କିଏ ଗୋଠାଏ ଏଇବାଟେ ଯିବା ଆସିବା କରୁଥିଲା ।" ଆଉ ଲୁଗ୍ଭଇ ପାରିଲି ନାହିଁ ।

"କେତେବେଳେ ?"

"ଏଇ ଲାଗେ ।"

 

"ଯାଃ, ଆପଣ ବୋଧହୁଏ ସପନ ଦେଖୁ ଉଠୁଛନ୍ତି ।" ସେ ହସି ହସି ଚାଲିଗଲେ ।

ସେ ଯେତେବେଳେ ଅଫିସକୁ ଯାଆନ୍ତି ନିତ ମୋତେ ପଚାରନ୍ତି—'ବାହାରକୁ ଯିବେ କି ?' ମୁଁ ହଁ କହିଲେ ସେ ତାଙ୍କ ଘରଟାରେ ଚାବି ଦେଇଯାନ୍ତି, ନଇଲେ ସେମିତି ମେଲା ପଡ଼ିଥାଏ ।

ସେଦିନ ମୁଁ ରହିବି ବୋଲି କହିଲି । ସେ ଚାଲିଗଲେ । ମୋର ଭାରି ମନ ହେଉଥାଏ ସେଇ ଟ୍ରଙ୍କଟାକୁ ଦେଖିବା ପାଇଁ ଯାଇଁ ଦେଖିଲି, ଟ୍ରଙ୍କଟା ଖୋଲା । ଭାବିଲି, ଟ୍ରଙ୍କତ ଖୋଲା ପଡ଼ିବାର ନୁହେଁ । ସବୁ ବାକ୍ସରେ ତ ଚାବି ପଡୁଛି । ଭଲ କରି ଦେଖି ବୁଝିଲି ଯେ କିଏ ଯେମିତି ଖୁବ୍ ତର ତରରେ ଚାବି ଦେଇ ଚାଲି ଯାଇଛି; କବଜାଟା ତା ଘର ଭିତରେ ପଡ଼ି ନାହିଁ । ମୋର ଆହୁରି କୌତୁହଳ ହେଲା । ତାଙ୍କୁଣିଟା ଉଠାଇଲି । ତା' ଭିତରେ କେତେଖଣ୍ଡ ବହିପତ୍ର, ରୁମାଲ, ବଡ଼ ନିମନ୍ତ୍ରଣ କାର୍ଡ, ଗଣ୍ଡେ ଫଟ ଆଉ ଟଣ୍ଡେ ଡାଇରି । ଫଟ ଖଣ୍ଡିକ ମୁଁ ଚିହ୍ନି ପାରିଲି ନାହିଁ— ପୁରୁଷର ଫଟ । ଫଟଟା ସବା ଉପରେ ଥିଲା । ମନେ ହେଲା କିଏ ଯେମିତି ତରତରରେ ପକେଇ ଦେଇ ଯାଇଛି । ସନ୍ଦେହ ହେଲା କାଲି ସେ ଛାୟାମୂର୍ତ୍ତି କ'ଣ ଏଇ ଫଟ ନେବାକୁ ଆସିଥିଲା କି ଆଜ !

ତାପରେ ଡାଇରି ଖଣ୍ଡ କାଢିଲି । ସାଧନାଙ୍କ ଡାଇରି । କାଲି ତାରିଖର ପୃଷ୍ଠାଟା ବାହାରି ପଡ଼ିଲା । ଅନ୍ୟାୟ କରୁଛି ବୋଲି ଜାଣି ବି ନ ପଢି ରହି ପାରିଲି ନାହିଁ । ସେଥିରେ ସେଦିନ ଲେଖା ହୋଇଚି—

ଅଜ୍ଞ ବ ଡାକିଲି । ଯେତେବେଳେ ସେ ଆସି ଡାକନ୍ତି ତାର ପାଞ୍ଚ ମିନଟ ଭିତରରେ ନିଦ ଭାଙ୍ଗିଲା । ମୁଁ ଉଠି ପଡ଼ି ଝରକା ପାଖକୁ ଗଲି । କେହ୍ନ ନାହିଁ—ଅଜ୍ଞ ବ କେହ୍ନ ନାହିଁ । ବର୍ଷେ ଚାରି ମାସ ତନିଦନ ହେଲା ଆଜକୁ—ସେ ଏଇଠି ଶେଷ ଦେଖା ଯାଇ-ଥିଲେ । ଅଜ୍ଞ ବ ଫଟଟା ନେଇ ମୋହନଙ୍କ ପାଖକୁ ଗଲି । ପୁଣି ଥରେ ନିରେଖି ଦେଖିଲି । କାହିଁ, କିଛି ତ ମିଳିଲା ନାହିଁ । ସେ ନାକ ସେ ଆଖି, ସତେ କ'ଣ ସେମିତିକା ଥିବ ? କିନ୍ତୁ ତଥାପି ମୋହନ ମୋତେ ଅନେକଟା ତାଙ୍କପରି ଦଶନ୍ତି । ମୋହନଙ୍କ ସହିତ କଥା କହିଲା ବେଳେ ମୋର ମନେ ହୁଏ ମୁଁ ତାଙ୍କ ସାଙ୍ଗରେ କଥା କହୁଛି ।'

# ପାଗଳା

ତମେ ପାଗଳ ଅନେକ ଦେଖିଥିବ । ଅନେକ ପାଗଳାଙ୍କ କଥା ଶୁଣିଥିବ । କିନ୍ତୁ ମୁଁ ଯେଉଁ ପାଗଳା କଥା କହିବି ସେମିତି ପାଗଳ କେବେ କେଉଁଠି ଦେଖି ନଥିବ କି ସେମିତି ପାଗଳା କଥା କାହାରି ପାଖରୁ ଶୁଣି ନଥିବ ।

ଦେଖିଲେ ପାଗଳ ବୋଲି କେହି କହିବ ନାହିଁ, କିନ୍ତୁ ସେ ପାଗଳ । ମୁଁ ଜାଣେ ସେ ପାଗଳ । କାହାରିକି କିଛି କହେ ନା—ଚୁଁ କି ଚାଁ କିଛି ନା । ସଂସାରରେ ଥାଇ ବି ସଂସାରରୁ ବାହାର । ଦୁନିଆରେ ଥାଇ ବି ନଥିଲା ପରି । ଖାଏ ପିଏ ଶୁଏ ବୁଲେ ଭଲ ମଣିଷ ପରି । ତଥାପି ପାଗଳ—ବଦ୍ଧ ପାଗଳ ।

ଘର ଅଛି ଦୁଆର ଅଛି—ସବୁ ଅଛି । ଅଥଚ କାହାରି ଉପରେ ମମତା ନାହିଁ । ପାଗଳ ଛଡ଼ା ଆଉ କ'ଣ ହୋଇପାରେ ।

ତଥାପି ତାର ହୃଦୟ ଥିଲା । ସେଠି ଦରଜ ଥିଲା—ଆମଠୁ ବେଶୀ ଆଘାତ ଲାଗୁଥିଲା ସେଠି । ଆମରି ପରି ସେ ହସେ, କାନ୍ଦେ, ଦାହକୁ ସୁଖ ଦୁଃଖ ସବୁ ଜାଏ । ଦୁଃଖରେ କଷ୍ଟରେ ସେ କଲିଜାଟାକୁ ଟାଣି ଓଟାରି ଛିଡ଼େଇ ଫିଙ୍ଗିଦେବାକୁ ମନ କରେ । ଛାତିଟାକୁ କାମୁଡ଼ି ଧରେ । ଛାତିର ସେଇ ଚମଡ଼ା ତଳେ—ଅସ୍ଥିର ତଳେ—ଓଃ କି କଷ୍ଟ ସେ ! ମୁହଁ ତାର ବିକୃତ ହୋଇଯାଏ ଯନ୍ତ୍ରଣାରେ ।

କିନ୍ତୁ ଉପଶମ ହୁଏନାହିଁ । ସେ ନିଜ ଛାତି ଉପରେ ନିଜେ ପ୍ରହାର କରେ । ବାଉଳି ପିଟି ହୁଏ । ପାଗଳ ନୁହେଁ ତ ଆଉ କ'ଣ !

ଆକାଶର ଗୋଟାଏ ଦିଗକୁ ଚାହିଁ ରହିଯାଏ । ଆଖି ବାହାରି ପଡ଼େ । ଡୋଳା ସ୍ଥିର ହୋଇ ଆସେ । ଜିଭ ଉଠେ—ଯେମିତି ନିଆଁ ବାହାରୁଛି । ଦେହ ଥରେ । ଦାନ୍ତ ପାଟି ବନ୍ଦ ହୋଇଯାଏ । ତତଲା ଲୁହ ଟପ ଟପ ଗଡ଼ି ପଡ଼େ ଆଖିରୁ । ସେ କାନ୍ଦେ । ହଁ, ସେ କାନ୍ଦେ । ଓଃ ଭାରି କଷ୍ଟ, ବଡ଼ ଦୁଃଖ, ବଡ଼ ଯନ୍ତ୍ରଣା । ପାଗଳ ହେବାଠାରୁ ଆହୁରି ବେଶୀ ଯନ୍ତ୍ରଣା । ସେ କଥା କେହି ଜାଣୁ ନଜାଣୁ ମୁଁ ଜାଣେ ।

ଜାଣିଚ ? ସେ ପାଗଳାଟା ବି ଭଲ ପାଇ ଶିଖିଥିଲା । ଭଲ ପାଉଥିବା ଲୋକପରି ହୃଦୟରେ ସେ ଅସ୍ୱସ୍ତି ଅନୁଭବ କରୁଥିଲା । ତଥାପି ସେ ଭଲ ପାଇବାକୁ ଯାଏ । ସେହି ଅସ୍ୱସ୍ତି କିଣି ଆଣିବା-ପାଇଁ ଭଲ ପାଇବାକୁ ଯାଏ । ପାଗଳ ନୁହେଁ ତ ଆଉ କ'ଣ !

ହଁ ଭଲ ପାଇବାଟା ଗୋଟେ ପାଗଳାମି । ଗୋଟେ ରୋଗ । ଭଲ ପାଇବାର ଦୁନିଆଟା ଗୋଟେ ପାଗଳା ଗାରଦ । ସେଠି ସମସ୍ତେ ପାଗଳ । ସେଥିପାଇଁ କେହି ଜାଣିପାରନ୍ତି ନାହିଁ, କେହି ବୁଝିପାରନ୍ତି ନାହିଁ ଯେ ସେମାନେ ନିଜେ ପାଗଳ । କିନ୍ତୁ ସମସ୍ତଙ୍କଠୁ ଏ ଥିଲା ବେଶୀ ପାଗଳ । ବଡ଼ ପାଗଳ ।

ଜୀବନଠାରୁ ବଡ଼ ହୃଦୟକୁ ନେଇ ସେ 'ଜଣକ'ର ପାଦ-ତଳେ ସଅଁପି ଦେଲା । ହୃଦୟକୁ ଉପେକ୍ଷା କରି ଜୀବନ ସାଙ୍ଗରେ ଜୁଆ ଖେଳିଲା । ଫଳରେ ହେଲା କ'ଣ ?

ନିଜେ ଧରା ଦେବାକୁ ଯାଇଁ ସେ 'ତାକୁ' ହରେଇ ବସିଲା । ବଳେ ବଳେ ଭୁଲି ଯାଇବାକୁ ଯାଇଁ ସେ ଭୁଲି ପାରିବା ପାଇଁ ପାରିଲା ନାହିଁ । ତଥାପି ସେ ଆଶା ଛାଡ଼ି ନଥିଲା । ପାଗଳ ନୁହେଁ ତ କ'ଣ ?

ସେ ତାକୁ ପୂଜା କଲା । ତାର ଫଟୋ ଆଣି ଆପଣା ଘରେ ଆପନା କଲା । ତାଙ୍କ ପାଖରେ ଯାଇ ନିଜର ଦୁଃଖ ଜଣାଏ । ସେଇ ଫଟୋକୁ ଚୁହିଁ କାନ୍ଦେ । ଉପର ମରୁ ଉପରେ ଆଖିର ଲୁହ ଢାଳେ । ପାଗଳ ନୁହେଁ ତ ଆଉ କ'ଣ !

ସବୁଥିର ସୀମା ଅଛି । କିନ୍ତୁ ମଣିଷ ଯେତେବେଳେ ତାର ସୀମାକୁ ଲଙ୍ଘନ କରି ଚାଲିଯାଏ ସେତେବେଳେ ସେ ଆଉ ତାର ପୂର୍ବ ଅବସ୍ଥାରେ ରହିପାରେ ନାହିଁ । ସେଦିନ କିନ୍ତୁ ସେ ପାଗଳ ସତକୁ ସତ ପାଗଳାମିର ସୀମା ଲଙ୍ଘନ କରିଗଲା ।

ବେମାର ପଡ଼ିଥାଏ । ବହୁତ ବାର ଡ଼ାକିଲା, ତାକୁ ଟିକିଏ ଦେଖିବା ପାଇଁ । ଭାବୁଥିଲା, ତାକୁ ଥରେ ଦେଖିଲେ ତାର ସବୁ ରୋଗ ଆରାମ ହୋଇଯିବ । ସେ ସୁସ୍ଥ ହୋଇ ଉଠିବ । କିନ୍ତୁ ସେ ଆସେ ନାହିଁ । ଯେତେ ବିକଳ ହୋଇ ଡ଼ାକ ପଠାଏ ସେ ଶୁଣେ ନାହିଁ । ହୃଦ ତରଳେ ନାହିଁ ।

ବହୁଦିନ ପରେ ସେ ଆସିଲା । ପାଗଳ ଏକୁଟିଆ ପଡ଼ିଥାଏ । କେହି ଶୁଶ୍ରୂଷା କରିବାକୁ ନାହିଁ । ପାଗଳ ତାକୁ ଦେଖି ହସିଲା ନାହିଁ ଆଜି । କାନ୍ଦିଲା ବି ନାହିଁ ଆଜି । ଠଣା ଉପରେ ଗୋଟିଏ ବୋତଲରେ ଔଷଧ ଥିଲା ! ପାଗଳ ଠାରିଲା ଦେବାପାଇଁ । 'ସେ' ମନା କରିପାରିଲା ନାହିଁ ।

ପାଗଳ ଆଁ କଲା । 'ସେ' ଔଷଧ ଢାଳିଦେଲା । ପାଗଳ ଆଖି ବୁଜି ଔଷଧ ଖାଇଦେଲା । ମୁହଁ ବିକୃତ ହୋଇଗଲା । 'ଆଃ' ବୋଲି କରୁଣ ଚିତ୍କାର ଛାଡ଼ି ଚାହିଁଲା 'ତା' ମୁହଁକୁ । ସେଠି ସେ କ'ଣ କରୁଣାର ରେଖା ଦେଖିଥିଲା ? କିଜାଣି !

ତାପରେ ସବୁ ଶେଷ । ରୋଗ ଶେଷ, ଯନ୍ତ୍ରଣା ଶେଷ, ଔଷଧ ଶେଷ ଆଉ ବୋଧହୁଏ ଭଲ ପାଇବାର ବି ଶେଷ ।

ଡାକ୍ତର କହିଲେ, ସେ ବିଷ ଖାଇ ଦେଇଛି । ଆତ୍ମହତ୍ୟା କରିଛି ।

କିନ୍ତୁ ସେ କ'ଣ ନିଜ ହାତରେ ନିଜକୁ ବିଷ ଖୋଇଛି !

ନା-ନା-ନା-ନା-!

ସେ ପରା ପାଗଳ ! ପାଗଳ ନିଜକୁ ହତ୍ୟା କରିପାରେ ନା !

କିନ୍ତୁ ପ୍ରକୃତରେ ସେ ପାଗଳାମିର ସୀମା ଲଙ୍ଘନ କରି ଯାଇଥିଲା । ସେ ଆଉ ପାଗଳ ନଥିଲା । ମୁଁ ତାର ଶବକୁ ଯାଇ ଦେଖିଲି । ବାସ୍ତବିକ୍ ଆଉ ତାର ପାଗଳାମି ନାହିଁ । କିଏ କହିଲା ସେ ପାଗଳ ବୋଲି !

# କଲ୍‌ପନା

କଳ୍ପନାଟା ସବୁଦିନେ, ସବୁ ଅବସ୍ଥାରେ, ସମସ୍ତଙ୍କ ପାଇଁ ବଡ଼ ମଧୁର । ବାସ୍ତବତାରେ ଆନନ୍ଦ ଥାଇ ପାରେ । ନଥାଏ ବୋଲି କହୁନାହିଁ । କିନ୍ତୁ କଳ୍ପନାର ଆନନ୍ଦଟା ବଡ଼ ସୂକ୍ଷ୍ମ । ବାସ୍ତବତାରେ ମୁହଁ ବାନ୍ଧି ହୋଇଯାଏ ବେଳେ ବେଳେ କିନ୍ତୁ କଳ୍ପନା ସବୁବେଳେ ନୂଆ—ସବୁବେଳେ ସୁନ୍ଦର ।

ଦୁହେଁ ଦୁହିଁଙ୍କି କଳ୍ପନାରେ ଦେଖନ୍ତି—ପୁଅଟିଏ—ଝିଅଟିଏ ବାଳକଟିଏ—ବାଳିକାଟିଏ—ନାଁ ଯୁବକଟିଏ—ଯୁବତୀଟିଏ ।

ସେତିକିରେ ତାଙ୍କର ସୁଖ । ସେତିକିରେ ତାଙ୍କର ଆନନ୍ଦ । ଚିଠି ଯାଏ ଚିଠି ଆସେ । ଇଚ୍ଛା ହୁଏ ଆହୁରି କିଛି ସୂକ୍ଷ୍ମ ଜ୍ଞାନମୟ ହୋଇ ପାରନ୍ତା କି । ଯେଉଁଥିରେ ବାସ୍ତବର ଗନ୍ଧ ନଥାନ୍ତା । ଚିଠି ଭଳି କାଗଜ କଲମ କାଳିର ଅବସ୍ଥିତିକୁ ଅତିକ୍ରମ କରି ଆଉ ଗୋଟାଏ ନୂଆ କୌଣସି ପ୍ରକାରର ଆଦାନ ପ୍ରଦାନର ଉପାୟ ଥାଆନ୍ତା କି ! ହୁଏତ ଦୁହେଁଯାକ ଦୁଇ ଦୂର ଉଇ ସ୍ଥାନରେ ରହି ଗୀତ ଗାଆନ୍ତେ । ସେ ଗୀତର ଲହରୀ ଆକାଶରେ ଭାସି ଆସନ୍ତା । ତାର ରୂପ ନଥାନ୍ତା । ସେ ଗୋଟାଏ ସ୍ୱର । ଗୋଟାଏ ମୂର୍ଚ୍ଛନା । ସେଇ କହନ୍ତା ପରସ୍ପରର ଅନ୍ତରର ଭାଷା । ହୁଏତ ସେ ବ୍ର ପାରନ୍ତା ନାହିଁ । ସେ ସ୍ୱରକୁ ବାହାରେ ଆଉ କେହି ଯଦି ଆପଣା ଯନ୍ତ୍ରରେ ଧରିରଖି ଶୁଣେ ! ସେ ଭାବି ପାରନ୍ତି ନାହିଁ କେଉଁ ସୂକ୍ଷ୍ମତମ ପଛ-ଭୂମି ଉପରେ ଦୁହିଙ୍କର ଭାବ ଫୁଟିବ !

ପରସ୍ପରର ବ୍ୟବଧାନ ଶହ ଶହ ମାଇଲ୍ ।

ପତ୍ରିକାର ମଧ୍ୟସ୍ଥତାରେ ହୋଇଥିଲା ପ୍ରଥମ ପରିଚୟ । ଦୁହେଁ ଦୁହିଁଙ୍କ ଲେଖାକୁ ପସନ୍ଦ କରନ୍ତି । ଦୁହେଁ ଦୁହିଁଙ୍କ ଲେଖାକୁଇ ଭଲ ପାଉଥିଲେ ।

ଯୁବକ ବସି ଯୁବତୀର ରୂପ ଆଙ୍କେ—ମନେ ମନେ । କବିତାର ଯତି ଭଳି ତାର ଭଙ୍ଗୀ, ଛନ୍ଦ ଭଳି ତାର ରୂପ, ଭାବ ଭଳି ତାର ହସ, ଭାଷା ଭଳି ତାର ସରଳତା ।

ଯୁବତୀ ବସି ଯୁବକର କଳ୍ପନା କରେ । ଗଳ୍ପ ଭଳି କ୍ଷିପ୍ର ଓ ବଳିଷ୍ଠ । କଥାବସ୍ତୁ ଭଳି ମନୋରଞ୍ଜକ ରୂପ । ପରିଚ୍ଛେଦ ପରି ତାର ଭଙ୍ଗୀ । ପ୍ରଶ୍ନ ଭଳି ତାର ହସ । ଉତ୍ତର ଭଳି ତାର ଗୁହାରୀ । ସମସ୍ୟା ଭଳି ତାର କଥା । ଭଲ ପାଇବାରେ ହିଁ ତାର ପରିଣତି । ଅପ୍ରତ୍ୟାଶିତ ପରିଣାମରେ ତାର ପ୍ରେମ ।

ଯୁବକ ଲେଖେ ଗଳ୍ପ । ଯୁବତୀ ଲେଖେ କବିତା । ପୁଣି ଯୁବତୀ ଗଳ୍ପ ଲେଖି ଆରମ୍ଭ କରେ ଯୁବକ-କବିତା । ଯୁବତୀର ଗଳ୍ପ ଯୁବକର କବିତାକୁ ଆଶ୍ରୟ କରି ଗଢି ଉଠେ । ଆଉ ଯୁବକର କବିତା ଯୁବତୀର ଗଳ୍ପ ଆଧାରର ଅସ୍ପଦରେ ସ୍ୱଚ୍ଛନ୍ଦ ଗତି କରେ

ପରସ୍ପର ହୃଦୟ କଥା ମିଳେ ପରସ୍ପରର ଆଲେଖ୍ୟରୁ । ଚିଠି-ଗୁଡାକ ମାମୁଲି । ସେଥିରେ କବିତ୍ୱ ନଥାଏ ଭାବ ପ୍ରବଣତାର ପରିଚୟ ଦେବାପାଇଁ । ଗଳ୍ପର କଳ୍ପନା ନଥାଏ ଅବାସ୍ତବତାର ଜୟଗୀତ ଗାଇବା ପାଇଁ ।

ଚିଠିଗୁଡାକ ଖୋଲା । ନିତାନ୍ତ ମାମୁଲି । ପାଣି ପବନ ଦେହପା ଖେଳ । ତଥାପି ସେଇ କର୍ଷିତ ଟୁକେଦାର ଭିତରେ ପ୍ରେମ ବୀଜ ବୁଣି ହୋଇଥାଏ । ପ୍ରଥମେ ପ୍ରଥମେ ବୁଝି ହେଉ ନଥିଲା ! କିନ୍ତୁ

ଯେତେବେଳେ ଅଙ୍କୁର ଉଦ୍‌ଗମ ହେଲ ପତ୍ର ପୁଷ୍ପରେ ଶୋଭା ପାଇବାକୁ ଆରମ୍ଭ କଲା, ସେତେବେଳେ ସେଠା ନ୍ୟାଯ୍ୟ ହେଉ ଅନ୍ୟାଯ୍ୟ ହେଉ, ତାର ମାୟା ଆଉ ଲୁଚ ହେଲା ନାହିଁ ।

ଦିନ ଯାଏ । ଦିନ ଯାଉଥାଏ । ଭିତରର ଆଗ୍ରହ କ୍ରମେ କ୍ରମେ କଳ୍ପନାର ଚନ୍ଦ୍ରକୁ ଭାଙ୍ଗି ପକାଇବାକୁ ବସିଲା । ରକ୍ତ ମାଂସରେ ଗଢ଼ା ଏ ଦେହର ଡାକ ଦୁହିଙ୍କୁ ଅସ୍ଥିର କରି ପକାଇଲା । ଦୁହିଙ୍କର ପ୍ରବଳ ଇଚ୍ଛା ହେଲା ଦୁହିଙ୍କି ଠିକ ଏ ଦେଖିବେ ।

ଯୁବକ ଫଟୋ ମାଗେ । ଯୁବତୀ କହେ—'ନା' ମୋର ଫଟୋ ନାହିଁ ।' ଭାବେ ଫଟୋ ଦେଖି ନଥିଲେ ପ୍ରଥମ ଭେଟଟା କେଡ଼େ ରୋମାଞ୍ଚକର ହେବ ସତେ !

ଯୁବତୀ ଫଟୋ ମାଗେ । ଯୁବକ କହେ—ମୁଁ ଫଟୋ ତୋଲେ ନାହିଁ । ଫଟୋ ବଡ ମିଥ୍ୟାବାଦୀ ।' ଭାବେ, ମୋ ବଦଳରେ ମୋ ଫଟୋକୁ ଭଲ ପାଇବା—ମୁଁ ତା ସହ୍ୟ କରିପାରିବି ନାହିଁ ।

ଯୁବତୀ ଚାହିଁ ବସେ—କେବେ ଦେଖା ହେବ !

ଯୁବକ ଭାବି ବସେ—ମିଳନ ରାତି କେବେ ଆସିବ ।

ଯୁବତୀ ଭାବେ—ବନ୍ଧୁ ତମେ ବଡ଼ ନିଷ୍ଠୁର ! ଥରେ ଦେଖା ଦିଅ !

ଯୁବକ ଲେଖେ—ଅନ୍ତରର ଆକୁଳ ଆହ୍ୱାନ ଥିଲେ ଦେବତା ମଧ୍ୟ ସ୍ୱର୍ଗରୁ ଓହ୍ଲାଇ ଆସନ୍ତି ।

ଯୁବତୀ ସନ୍ଦେହ କରେ—ତା' ହୃଦୟ କ'ଣ ଅବାସ୍ତବ ? ତାର ଆହ୍ୱାନ କ'ଣ ଅନ୍ତରର ନୁହେଁ ?

ଯୁବକ ବିଚାର କରେ—ଏଇ ବ୍ୟବଧାନଟା କ'ଣ ଅନତି-କ୍ରମଣୀୟ !

ଯୁବତୀ କ ଲେଖେ—ମୁଁ ଯିବ, ମୁଁ ଯିବ ! ଯୁବତୀ ପୁଚ୍ଛେ ଥାଏ—କାହିଁ ?

ଯୁବତୀ ଶଠି ପାଇଲା—ମୁଁ ଆସିବି । ସତ ସତ ମୁଁ ଆସିବି । କାଲି ସକାଳ ଆଠଟାରେ ମୁଁ ତମ ଦ୍ୱାରରେ ଉକାଶି ହେବି ।

ସତେ ସତେ ! ଯୁବତୀ ବିଶ୍ୱାସ କରିପାରୁ ନଥିଲା !

ତହିଁ ଆରଦିନ । ସେଦିନ ବି ସବୁଦିନ ପରି ରାତି ପାହିଥିଲା । ଯୁବତୀ ଦେଖିଲା, ରାତି ପାହିଛି । ସେ ଅନନ୍ତ ନୟନକୁ କାକର ପାଣିରେ ଧୋଇ ଅବଦ ଅଙ୍ଗକୁ ଝର ଜଳରେ ମାଜୁଥିଲା । ସୂର୍ଯ୍ୟ ଉଠି ଆସିଲେ । ପ୍ରେମ ମୂଳରେ ଆଲୋକର ମିଠା ହସ ।

ଯୁବତୀର ସଜ ସରୁ ନଥିଲା । ନିରାଡମ୍ବର—ନିରାଭରଣ—ସରଳ କବିତାର ପଙ୍‌କ୍ତି ପରି । ତଥାପି ସରୁ ନଥିଲା । ପଦ ପଡ଼ୁ ନଥିଲା । ଅମିତ୍ରାକ୍ଷରରେ ଛନ୍ଦ ଯତି ବିଗିଡ଼ି ଯାଉଥିଲା । ଶବ୍ଦଗୁଡିକ ପଦ ହେବାମାତ୍ରେ କମ୍ପିତ ନିଜର ସ୍ଥାନ ନିର୍ଣ୍ଣୟ କରିପାରୁ ନଥାନ୍ତି ।

ସାତଟା ବାଜିଗଲା । ଯୁବତୀ ବାରମ୍ବାର ବାହାରକୁ ଆସେ । ପୁଣି ଘର ଭିତରକୁ ଯାଏ । ଚଉକୀଠାକୁ ବାରମ୍ବାର ସିଧା କରୁଥାଏ । ଟେବୁଲ୍ କ୍ଲଥ୍‌ଟାକୁ ଘନଘନ ଝାଡି ଦେଉଥାଏ । ପୁଣି ଗବାକ୍ଷ ପଥରେ ପୁଚ୍ଛେ—ସଚକିତ ନୟନଂ । କାହିଁ କେହି ଆସିଲେ ନାହିଁ—ପଶ୍ୟତି ତବ ପନ୍ଥାନମ୍ ।

ବାଠ ପାଖରେ ଉକାଶିଟିଏ । କେତେବେଳୁ ଠିଆ ହେଲଣି । ଯୁବତୀ ମନେ ମନେ ଅଛା କରି ଉକାଶିକ ପଚ୍ଛରେ—ଉକାଶି, ଦେଖୁଛୁ ସେ ଉକାଶି କ ?

ତା'ର ମନ ଭିକାରୀ ହୋଇ ତାକୁ ଉତ୍ତର ଦିଏ—କାହିଁ ଭିକାରୀ !

'ସେଇ ତ ସେଇ ଭିକାରୀ—ଯେ ପ୍ରେମ ଭିକ ମାଗି ଆସେ ।' ଆପଣା ଉତ୍ତରରେ ସେ ହସି ଉଠେ । ମନେହୁଏ ସେ ଆନନ୍ଦ ତା ପ୍ରେମ ଭିକାରୀର ପାଦତଳେ ଝଂରା ପୁଷ୍ପଭଳି ବିଛୁଡି ହୋଇ ପଡ଼ୁଛି ସତେ କି !

ଆଠଟା ବାଜିଗଲା । କେହି ନାହିଁ । ଯୁବତୀର ପ୍ରାଣ ଶୁଷ୍କ ହୋଇ ଉଠିଲା । ଭିକାରୀଟା ସେତେବେଳ ଯାଏଁ ବି ଠିଆ ହୋଇଛି । ତାର ଭାରି ରାଗ ହେଲା । ଭିକାରୀଟାକୁ ମାରି ତଡ଼ି ଦିଅନ୍ତା ।

ନଅଟା ବାଜିଲା । କାହିଁ ? ଯୁବତୀର ପ୍ରାଣ କାନ୍ଦି ଉଠୁଥିଲା—କୁରଙ୍ଗୀ ପ୍ରାୟେ ।

ହଠାତ୍ ଜଣେ ଭଦ୍ର ଲୋକ ଆସି ଭିକାରୀ ପାଖରେ ଠିଆ ହେଲା । ଯୁବତୀ ଦଉଡ଼ି ଗଲା ଦାଣ୍ଡ ଦୁଆରକୁ । କିନ୍ତୁ ଏ କିଏ ? ଏଇ କ'ଣ ତାର ପ୍ରେମ ଭିକାରୀ । ଯା'ର ହାତରେ କ'ଣ ସେ ତାର ହୃଦୟକୁ ସମର୍ପଣ କରି ଦେବ ! ନା—ନା—ଏ ନୁହନ୍ତି—ଏ କଦାପି ହୋଇ ନ ପାରନ୍ତି ।

ଜଣେ କୃଷ୍ଣକାୟ ମନୁଷ୍ୟ । ରୁଗ୍‌ଣ । ଅସ୍ୱାଭାବିକ ଲମ୍ବ । ପରିଧାନ ମଳିନ ଜୀର୍ଣ୍ଣ । ଭିକାରୀକୁ ପଚାରିଲା—ଏଇଟା କ'ଣ—?

ଯୁବତୀ ଦଉଡ଼ିଗଲା—ହଁ ଏଇଟା ମୋ ଘର । କ'ଣ ଅରୂପ ବାବୁ ପଠେଇଛନ୍ତି ? ଆସି ପାରିଲେ ନାହିଁ ସେ ? କ'ଣ ହେଲା ତାଙ୍କର ? କୌଣସି ବିପଦ ହୋଇ ନାହିଁ ତ ?

ଯୁବକ ହତବାକ୍ୟ ହତଭମ୍ବ ହୋଇ ଠିଆ ହୋଇଗଲା । ତା ପରେ ଗୋଟାଏ ନିଶ୍ୱାସ ନେଇ କହିଲା—ହଁ, ମୁଁ ଅରୂପବାବୁଙ୍କ ପାଖରୁ ଆସୁଛି । ବଡ଼ ଦୁଃଖର କଥା, ସେ କାଲି ମାରି ପଡ଼ିଗଲେ ।

'ଏଁ—ମରିଗଲେ !" ଯୁବତୀ କଥା କହିପାରୁ ନଥିଲା ।

ଭଦ୍ରଲୋକ କହିଲେ—ମଲାବେଳକୁ ସେ ବେଶି ଆପଣଙ୍କ କଥାଇ କହୁଥିଲେ । କହିଲେ କହିଦେବ, ମୋର ଶେଷ କଥା— କଳ୍ପନା କଳ୍ପନାରେହିଁ ରହିଯିବା ଭଲ । ବାସ୍ତବ ଜଗତକୁ ଟାଣି ଆଣି ତାର ଅସମ୍ମାନ କରିବ ନାହିଁ !"

ଯୁବତୀ କାନ୍ଦୁଥିଲା । ଯୁବକ ନମସ୍କାର କରି ଧୀରେ ଧୀରେ ଚାଲିଗଲା ।

ଯୁବତୀ ସଜଳ ନେତ୍ରରେ ପଚାରିଲା—ଆପଣ—ଆପଣ—

ଯୁବକ ଉତ୍ତର ଦେଲା—ମୁଁ ଅରୂପର ମିତ—ମୋ ନା ଅରୂପ ।

ଯୁବତୀ କିଛି କହିବା ପୂର୍ବରୁ ଯୁବକ ଚାଲି ଯାଇଥିଲା ।

ଭିକାରୀଟା ତାର ଛିଣ୍ଡା ମୁଣି ଭିତରୁ କାଢି, କଳା ବଲ୍ ବଲ୍ ଫନ୍ଦ ଭଙ୍ଗା ଫୁଟା ସିଲଭର ଡେକଚିରେ ମୁଣ୍ଡି ଦି'ଟା ପକେଇ ପାଟିକି ପକାଉଥାଏ । ହାତରେ ଟଣ୍ଡିଆ ନାଲି ଲଙ୍କା ଖଣ୍ଡେ ।

# ଭୁଲ

ସେଦିନ ଶୁଣିଥିଲି ଗୋଟିଏ ଛୋଟ ଫଟୋ ରାଗ । ଭୁଲି ଗଲିଣି । ଆଜି ଛୋଟଟା ମୋର ଫାଟିଛି ସିନା—ସେ ଦିନର ରାଗ ଆଉ ମନେ ପଡୁନାହିଁ । ଗୁଣୁଗୁଣୁ ହୋଇ ଉଠେ । ପୁଣି ବେସୁରଆ ହୋଇଯାଏ । ତାଳ ବେତାଳରେ ପଡ଼େ । କିଏ କେଉଁଠି ଗୀତ ଗାଇଲେ ମୁଁ ଶୁଣେ । କାଳେ ତା'ର ଭିତରୁ ଖିଅଟା ମିଳିଯିବ । ମିଳେ ନା ।

ଅନେକ ଦିନ ତଳେ । କୌଣସି ରମଣୀର ସମ୍ପର୍କରେ ଆସିବା ସେଇ ମୋର ପ୍ରଥମ । ଅଞ୍ଜନା ଏ ପ୍ରଦେଶର ଝିଅ ନୁହେଁ । ପରିଚୟ ହେଲା । ଇଂରାଜୀରେ କଥାବାର୍ତ୍ତା କରୁ । ଚିଠି ପତ୍ର ଇଂରାଜୀରେ । ଆମ ଦୁହିଁଙ୍କର ଆଳାପ ଭିତରେ ଥିଲା ଦୁଇଜଣଙ୍କର ଦୁଇଜଣଙ୍କୁ ଚିହ୍ନିବାର ମୋହ । ନା—ନା—ପରସ୍ପରକୁ ପରସ୍ପର ଉପରେ କଷିନେଇ ନିଜ ନିଜକୁ ଚିହ୍ନିବାର ପ୍ରୟାସ ।

ଆଦର୍ଶଟା କି ଜିନିସ ? ଅଙ୍ଗେ ନିଭେଇବା ଭଲି ସତକୁ ଛୋଟ ଯେତେ ଦୂରକୁ ଦଉଡ଼େ ମଣିଷ ସେତକି ଆଦର୍ଶବାଦୀ ଟର୍ସ ହୁଏ । ଆଦର୍ଶ ପଛରେ ଧାଇଁବାବେଳେ ମଣିଷର ଗୋଟେ ଜୀବନ ମୃତ୍ୟୁର ପିଆସା ଥାଏ—କୁହୁଡ଼ିରେ ପହଁରିବାକୁ ଯାଇ ହାତଗୋଡ଼ ଭାଙ୍ଗି ପକାଇବା ପାଇଁ ।

ସ୍ତ୍ରୀ ସହିତ ପୁରୁଷର କି ସମ୍ପର୍କ ? ମୁଁ ଭୁଲି ଯାଇଥିଲି ସେଦିନ । ଆଦର୍ଶର ମୋହରେ ବୋଲି ଦିନେ ମୋର ପୁଣି ଯୋଭ ହେଲା ।

ଅଞ୍ଜନାକୁ ମୁଁ ଭଲ ପାଇଲି । କାହିଁକି ? ତାର ମୋର ମତ ମେଳ ହେଲା ବୋଲି ? ହୃଦୟର ସାମଞ୍ଜସ୍ୟ ପାଇଲି ବୋଲି ?

ନା—ତାର ମୋର ନୈତିକ ସାନ୍ନିଧ ହେଲା ବୋଲି ? କହିପାରିବି ନାହିଁ । କିନ୍ତୁ ମୁଁ ତାକୁ ଚହିଁଲି—ସେ ମୋତେ ଚହିଁଲା । ଉଭୟ ଉଭୟଙ୍କୁ ନିକଟତର, ଅନେକଟା ଆପଣାର କରି ନେଇଥିଲୁ । ଆଜି କ'ଣ ସେଇଥିପାଇଁ ?

ନା—ତା' ନୁହେଁ । ସେ ଧାରଣାଗୁଡ଼ାକ ନିହାତି ଭୁଲ । ବହୁତ ପରେ ମୁଁ ସେ ଭୁଲଟା ବୁଝିପାରିଲି । ସେ ସବୁପାଇଁ ମଣିଷ ଭଲ ପାଏ ନାହିଁ । ମଣିଷ ଭଲ ପାଏ ଆଗେ । ଭଲ ପାଇ ସାରିଲେ ଯାହାକୁ ଭଲ ପାଏ ତାକୁ ପାଇବାପାଇଁ ଏ ସବୁ କାଳ୍ପନିକ ତଥ୍ୟ ଆବିଷ୍କାର କରେ । ବରଂ ତାର ଭଲ ପାଇବାର ଯଥାର୍ଥତାକୁ ପ୍ରମାଣ କରିବାପାଇଁ ଏ ସବୁ ତାର ଯୁକ୍ତି—ଛଳନା । ଆପଣାର ଦୋଷୀ ମନକୁ 'ବୁଝାଇବା ପାଇଁ, ସାନ୍ତ୍ୱନା ଦେବାପାଇଁ, ଏ ନୈତିକତାର ଆଶ୍ରୟ ।

ଅଞ୍ଜନା ଚାଲିଗଲା । ତାର ବାପା ବଦଳି ହୋଇଗଲେ । ମୁଁ କହିଲି—ଅଞ୍ଜନା ଚିଠି ଦବ ? ତା' ପାଖରେ ଧ୍ରୁବପଦ ଟିଏ ହୋଇ ରହିଥିଲା ! ସେ କିଛି କହିଲା ନାହିଁ ।

ଅଞ୍ଜନା ଡରୁଥିଲା । କାହାକୁ ? କାହିଁକି ?

'ଦେବି' । କେତେବେଳ ପରେ ସେ କହିଲା । ସେ 'ଦେବି'ର ଅର୍ଥ କିଛି ନୁହେଁ ।

ଅଞ୍ଜନା ମୋତେ ଭୁଲିଲା । ମୁଁ କିନ୍ତୁ ତାକୁ ଭୁଲି ପାରିଲି ନାହିଁ । ମୋର ଏଇ ଭଲ ପାଇବା ଆଦର୍ଶଟା ଗୋଟାଏ ଅଶରୀରୀ ଭୂତପରି ମୋ ପଛରେ ଗୋଡ଼ାଉଥିଲା । ଅଞ୍ଜନାର ଭଲ ପାଇବାର ଜୀଅନ୍ତା—ସେ ତେଣୁ ମରିଗଲା । ମରି ପୁନର୍ଜନ୍ମ ନେଲା ।, ମୋର

ମଣି ପ୍ରାଣପ୍ରାଣ ଭଲ ପାଇବା, ଅଚେତନ ପଥର ପରି ଯେମିତି ଥିଲା ସେମିତି ପଡ଼ି ରହିଲା ।

କଉଁଟା ବଡ଼ ? କଉଁଟା ସତ ?

ସ୍ତ୍ରୀ ସହିତ ପୁରୁଷର କି ସମ୍ପର୍କ ? ଏ ପ୍ରଶ୍ନର ଉତ୍ତର ଉପରେ ସେ ସବୁର ଉତ୍ତର ନିର୍ଭର କରୁଛି । ଯାର ଉତ୍ତର ଦେବାକୁ ମଣିଷର ସାହସ ହୁଏ ନାହିଁ ।

... ... ...

କେତେଦିନ ଗଲିଗଲା । ଅନେକ ଦିନ ଗଲଣି । ଅଞ୍ଜନାର ମୋର ପୁଣି ଭେଟ ହେଲା ।

ଅଞ୍ଜନା ମା ।

ମୁଁ ପିତା ହୋଇନାହିଁ ।

ଅଞ୍ଜନା ଏଇ ଗୋଟିମାଟିର ଜଗତରେ ବୁଲୁଛି । ସେଦିନର ଅଞ୍ଜନା ଅଜିର ଅଞ୍ଜନା ଭିତରେ ଆକାଶ ପାତାଳ ତଫାତ୍ । ଆଜି ସେ ଝାଲ୍ ପାଣିରେ ବୁଡ଼ିନାହିଁ—ପଙ୍କରେ ଘାଣ୍ଟି ହେଉଛି । ଆଉ ମୁଁ ? ସେଇମିତି ଭାସୁଛି ଉପରେ ।

ସେ କହେ, ଯେଉଁ ଦାୟିତ୍ୱ ନେବାକୁ ତମେ ଡରୁଛ, ଯେଉଁ ଦାୟିତ୍ୱକୁ ତମେ ଏତେଦିନ ଏଡ଼ି ଏଡ଼ି ବୁଲିଛ ସେଇ ଦାୟିତ୍ୱକୁ ନେଇ ସଂସାରରେ ବୁଲିବାରେ ମୋର ସାହସ ବଢ଼ିଛି—ଆତ୍ମ ପ୍ରତ୍ୟୟ ଆସିଛି—ମୁଁ ଗର୍ବ ଅନୁଭବ କରୁଛି । ଆନନ୍ଦ ପାଉଛି ।

ଅଞ୍ଜନାର ପୁଅଟି ଭାରି ସୁନ୍ଦର । କଇଁଫୁଲ ଭଳି । ଆନନ୍ଦ ପାଇବାର କଥା ।

ମୁଁ କୋଳରେ ଜାକି ଧରିଲି । ଭାରି ଆନନ୍ଦ ଲାଗିଲା । ତାରି ଭିତରେ ଯେମିତି ମୋର କଳ୍ପଲୋକର ଅଞ୍ଜନା ।

ଅଞ୍ଜନା, ଏ ପୁଅଟିକୁ ମୋତେ ଦେ ।

ଅଞ୍ଜନା ହସିଲା । ସେ ହସ ନୁହେଁ ଉପହାସ ।

ମୋର ବୟସ ହୋଇଯାଇଛି । ମୁଁ ବିବାହ କରିନାହିଁ । ଅଞ୍ଜନାର ଉପହାସ ସେମିତି ରହିଯାଉ । ତା'ର ପ୍ରତିଶୋଧ ମୁଁ ନେଇ ପାରିବି ନାହିଁ । ଆଜି ଏ ବୟସରେ ।

ଅଞ୍ଜନା ସତୀ । ହିନ୍ଦୁ ଘରର କୁଳବଧୂ । ଭଲ ପାଇବାକୁ ଗୋଟିଏ ଗଣ୍ଡି ଭିତରେ ଯେଉଁମାନେ ବାନ୍ଧି ରଖିପାରନ୍ତି ସେଇମାନେ ସତୀ । ଅଞ୍ଜନା ମୋତେ ଆଜି ଭଲ ପାଇ ପାରେ ଏ ପ୍ରଶ୍ନ ବି ଉଠିବ ନାହିଁ—ଉଠି ପାରେନା ।

ମୁଁ ବିଟପ । ମୁଁ ଚରିତ୍ରହୀନ । ଗୋଟାଏ ଅଞ୍ଜନା ବଦଳରେ ମୁଁ ହଜାରେ ଅଞ୍ଜନାର ସନ୍ଧାନ କରି ବୁଲୁଥିଲି । ଯେଉଁ ଅଞ୍ଜନା ମୋ ପକ୍ଷରେ ଏତେ ଦୁଷ୍ପ୍ରାପ୍ୟ ମୂଲ୍ୟବାନ ହୋଇଥିଲା, ତାକୁ ନିହାତି ବାଜେ ସହଜ ଲଭ୍ୟ ବେଶ୍ୟା କରି ପାଇବାର ଲାଳସାରେ, ମୁଁ ନିଜେ ଅସଂଖ୍ୟ ଅବାଞ୍ଛନୀୟା ସ୍ତ୍ରୀଙ୍କ ପାଖରେ ଶସ୍ତା ହୋଇଯାଇଛି । ଅଞ୍ଜନା ସେ କଥା ଜାଣେ ନାହିଁ ।

ସମସ୍ତେ କହିବେ ଅଞ୍ଜନାକୁ ନ ପାଇବାର ଦୁଃଖକୁ ଭୁଲିବା-ପାଇଁ ମୁଁ ବେଶ୍ୟାଶକ୍ତ ହୋଇଛି । କିନ୍ତୁ ପ୍ରକୃତରେ ତା ନୁହେଁ । ମୁଁ ଯାଇଥିଲି, ଦିନେ ନାରୀର ଯେଉଁ ପ୍ରେମର ମୂଲ୍ୟ ମୁଁ ଏତେ ଉଚ୍ଚ ଧରିଥିଲି ତାକୁ ହରିନୋଠ କରି ବାଟରେ ବିଞ୍ଛୁଡ଼ି ଗୁଳିଦିବା ପାଇଁ । କିନ୍ତୁ ଫଳରେ ହେଲା କ'ଣ । ମୁଁ ଅଞ୍ଜନାର ପ୍ରେମକୁ ଭୁଲିପାରିଲି

ନାହିଁ । ତାର ପ୍ରେମର ମୂଲ୍ୟକୁ ହ୍ରାସ କରିପାରିଲି ନାହିଁ । ବରଂ ପ୍ରତି ମୁହୂର୍ତ୍ତରେ ସେ ପ୍ରେମ ମୋର ମନେ ପଡୁଥାଏ । ପ୍ରତିମୁହୂର୍ତ୍ତରେ ତାର ମୂଲ୍ୟ ମୋ ଆଖିରେ ବଢି ଚାଲିଥାଏ ।

ବେଶ୍ୟା ଭିତରେ ଯେଉଁ ଅଞ୍ଜନା, ଏ ସେ ଅଞ୍ଜନା ନୁହେଁ। ଅଞ୍ଜନା ଆଜି ବେଶି ବଡ଼ ହୋଇଯାଇଛି ।

'ଅଞ୍ଜନା, ମୁଁ ଫେରି ଆସିବାକୁ ଚାହେଁ, ମୋତେ ଫେରାଇ ନେବ ?' ମୁଁ ପଚାରିଲି ।

'ମୋତେ ତମେ ଭଲ ପାଇ ପାରିବ ?' ସେ ଉତ୍ତର ଦେଲା !

ଭାବିଲି, ଠିକ୍ ତ । ମୁଁ ଶିଖିଛି, ମୁଁ ପଢ଼ିଛି । ମୁଁ କେତେ ତଳେ । ମୁଁ ତାକୁ ଭଲ ପାଇ ପାରିବି ।

ମୋତେ ଟିକିଏ ହସ ବି ମାଡିଲା । ସେଦିନ ଯେଉଁ ଆଦର୍ଶ ପଛରେ ଗୋଡ଼ାଇ ଅଞ୍ଜନାକୁ ହରାଇଥିଲି—ଆଜି ଅଞ୍ଜନା କ'ଣ ମୋଠୁ ସେଇ ଭଲ ପାଇବା ଆଶା କରୁଛି ଅବା ! ଖାଲି ହୃଦୟର ମିଳନ । ଦେହର ସାନ୍ନିଧ୍ୟ ନାହିଁ । କେବଳ ନିର୍ମଳ ପ୍ରେମ । ବାସନା ନାହିଁ—ବିଳାସ ନାହିଁ ।

କିନ୍ତୁ ମୁଁ କ'ଣ ପାରିବି ? ସ୍ତ୍ରୀ ପୁରୁଷର କି ସମ୍ପର୍କ ତାହା ଭିତର ମୋ ହାଡ଼ରେ ହାଡ଼ରେ, ମଜ୍ଜାରେ ମଜ୍ଜାରେ ଲେଖା ହୋଇଛି । ଅଞ୍ଜନା ଆଜି ତା' ମାନିବାକୁ ଚାହେଁ ନାହିଁ ।

'ପାରିବି ।' ସାହସ ବାନ୍ଧି କହିଥିଲି । କିନ୍ତୁ ପାରିଲି ନାହିଁ ।

ମୋର ଭଲ ପାଇବା ଆଦର୍ଶର ଗଣ୍ଡି ଭିତରେ ରହି ପାରିଲା ନାହିଁ । ମୁଁ ଅଞ୍ଜନାକୁ ଯେତେ ମନେ ମନେ ଧରି ରଖିବାକୁ ଚେଷ୍ଟା

କରେ ସେ ସେତେ ଖସି ବୁଲେ । ମୋତେ ବେଶ୍ ଜଣାଯାଏ ଅଞ୍ଜନା ମୋର ନୁହେଁ ।

ଅଞ୍ଜନା କ'ଣ ଭାବୁଥିଲା କେଜାଣି ! ମୁଁ ଭାବୁଥିଲି, ଅଞ୍ଜନା ମୋତେ ଧରି ରଖିପାରିବ ନାହିଁ । ତାର ଆଉ ସେ ଶକ୍ତି ନାହିଁ । ମା ହୋଇସାରିବା ପରେ ସ୍ତ୍ରୀ ପୁରୁଷକୁ ଧରି ରଖିବାର ଶକ୍ତି ଯେମିତି ହରେଇ ବସେ ।

'ବାହା ହୁଅ !' ଆଜି ବି ସେ ସେଇକଥା କହୁଛି ।

ସେଦିନ ବାହା ନହୋଇ ଯେଉଁ ଭୁଲ୍ କରିଥିଲି ଆଜି ପୁଣି ବାହା ହୋଇ ସେଇ ଭୁଲ କରିବି ! ସେଦିନ ମୁଁ ତାହାକୁ ଧରି ପାରିନଥିଲି । ଆଜି ଆଉ ମୋତେ କେହି ଧରି ରଖିପାରିବ ନାହିଁ ।

ସେଦିନ ମୋର ଅଯୋଗ୍ୟତାରୁ ମୁଁ ହତାଶ ହୋଇଥିଲି । ସେତେବେଳେ ସେଇ ଛାତ ଫଟା ରାଗିଣୀଟା କିଏ ମୋତେ ଗାଇ ଶୁଣେଇଥିଲା । ଆଜି ଛାତ ଫାଟି ଯାଇଛି । ଅକ୍ଷମତାରୁ ଶୁଣି ପାରୁନାହିଁ ସେ ସ୍ୱନ ।

ଅଞ୍ଜନା ସାଙ୍ଗରେ ଅନେକଦିନ ହେବ ଦେଖା ହୋଇନାହିଁ । ମୁଁ ବି ଆଉ ଦେଖା କରିବାକୁ ଚାହେଁ ନାହିଁ ।

ଓଃ—ପୁଣି ସେଇ ଛାତଫଟା ରାଗର ଗୁଣୁଗୁଣିଟା । ସେ ଗୀତଟା କ'ଣ—ସେ ରାଗଟା କ'ଣ ? ଆଃ—ପ୍ରୁ ମନେ ପଡୁନାହିଁ ।

କେବେ ଯେ ମନେ ପଡିବ ।

# ବୀଣା

ଋଷିକୁଲ୍ୟା ନଦୀ ତଟରେ ଗୋଟିଏ ବୃଦ୍ଧ ଅନେକ ଦିନରୁ କୁଟୀରଟିଏ ବାନ୍ଧିଥାଏ । ଦିନରେ ଭିକ ମାଗିଯାଏ । ରାତି ହେଲେ ଡାଳି କଳାଦେଇ ଛିଣ୍ଡା ମୁଣ୍ଡୀ ଭିତରୁ ପୁରୁଣା ବୀଣାଟିଏ କାଢ଼ି ବଜାଏ । ପିଣ୍ଡା ଉପରେ ଶୁଖିଲା ଖଡଗୁଡ଼ାକ ଭିତରେ ବି ମରମର ଶବ୍ଦ କରି ଉଠେ ।

ଜନପଦ ବଧୂ-ଲୋଚନ-ବିମ୍ବିତ ଋଷିକୁଲ୍ୟାର ଛଳ ଛଳ ଶୀତଳ ଜଳ ମଧ୍ୟ ଢଳ ଢଳ ନାଚି ଉଠେ । ଅଦୂରରେ ଗୋଟିଏ ତରୁଣୀ, ଲୋକ ଲୋଚନର ଅଲକ୍ଷରେ ବସି ସେହି ଜଳ ଭିତରକୁ ବୀଣା ଝଙ୍କାରର ତାଳରେ ତାଳରେ ଉପଲ ଖଣ୍ଡ ନିକ୍ଷେପ କରୁଥାଏ । ଅନନ୍ତ ଦୂରରେ ଗୃହାଭିମୁଖୀ ପଥିକର ପଦ ଚଞ୍ଚଳ ହୋଇଯାଏ । ଆପଣାର ଅଗୋଚରରେ ।

କେହି ଶ୍ରୁତିପାତ କରେ ନାହିଁ । ସଂସାର ବିଚଳିତ ହୁଏ ନାହିଁ । ଆକାଶର ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା କକ୍ଷଚ୍ୟୁତ ହୁଅନ୍ତି ନାହିଁ ।

କେହି ଶୁଣେ ନାହିଁ, କେହି ଜାଣେ ନାହିଁ । ଜାଣି ମଧ୍ୟ ଜାଣେ ନାହିଁ । ଏକା ସେଇ ବୁଢ଼ାଟି ବଜାଏ । ଆଉ ବୁଢ଼ାର ଅଜ୍ଞାତରେ ଶୁଣୁଥାଏ ସେଇ ଯୁବକ ।

କୁମାର ପୂର୍ଣ୍ଣିମା ରାତି । ବୁଢ଼ାର ବୀଣା ଉତଳା ହୋଇ ବାଜି-ବାକୁ ଆରମ୍ଭ କଲା । ତରୁଣୀର ପ୍ରାଣ ନାଚି ଉଠିଲା । ପୁଲକରେ ରୋମ ମୂଳେ ଫୁଲି ଉଠିଲା । ଆଖିରେ ଲୁହ ।

ଏ କଅଣ—ଏ କଅଣ ! ତାଳ ଛାଡିଦେଇ ବୀଣା ଏମିତି ବେସୁରା ବାଜି ଉଠିଲା କାହିଁକି ! ତରୁଣୀ ଚିତ୍କାର କଲା—ବନ୍ଦକର, ବନ୍ଦକର ! ବୃଦ୍ଧ ଶୁଣିଲା ନାହିଁ । ମତୁଆଲା ହୋଇ ସ୍ୱରହୀନ, ଛନ୍ଦହୀନ ଝଂକାର ସୃଷ୍ଟି କରିବାରେ ଲାଗିଥାଏ ବୃଦ୍ଧ ।

ବୀଣାର ତାର ଛିଡିଗଲା । ବୃଦ୍ଧ କ୍ଳାନ୍ତ ଅର୍ଦ୍ଧଚେତନ ଅବସ୍ଥାରେ ଦେଖିଲା ପାଖରେ ଉଭା ହୋଇଛି ଗୋଟିଏ ତରୁଣୀ । ସେଇ ତରୁଣୀ । ଆଖିରେ ଲୁହ । ମୁହଁ ମଣ୍ଡଳରେ ଦୟା, କରୁଣା ଓ ସହୃଦୟତାର ଛାୟା । ସେହିଦିନ ବୃଦ୍ଧ ଓ ତରୁଣୀର ପ୍ରଥମ ସାକ୍ଷାତ୍, ଅତୀତ ଓ ଭବିଷ୍ୟତର ସନ୍ଧିକ୍ଷଣ ପରି ।

ତା ପରଠୁଁ ତରୁଣୀ ପ୍ରତିଦିନ ଆସେ । ବୃଦ୍ଧ ପ୍ରତିଦିନ ବଜାଏ । ତରୁଣୀ ଶୁଣେ ।

ଦିନେ ବୃଦ୍ଧ ତରୁଣୀକୁ ଡାକି କହିଲା—"ବତ୍ସ, ଏ ବୀଣା ତମେ ଥରେ ଧର । ମୁଁ ଥାଉଁ ଥାଉଁ—"

ତରୁଣୀ କାତର କଣ୍ଠରେ ତାର ଅକ୍ଷମତା ଜଣାଇଲା—"ନା—ନା, ମୁଁ ଏ ବୀଣା ଧରିବାର ଯୋଗ୍ୟପାତ୍ର ନୁହେଁ ।"

ବୃଦ୍ଧ ନିରାଶ ହେଲା । କିନ୍ତୁ ପୁଣି ଥରେ ଅନୁରୋଧ କରି କହିଲା—"ତମଠାରୁ ଅଧିକ ଉପଯୁକ୍ତ ପାତ୍ର ମୋତେ କେହି ଦିଶୁ ନାହାନ୍ତି । ମୋର ଆଉ କେତେଦିନ । କାହାକୁ ଏ ମୂଲ୍ୟବାନ ବୀଣାର ଭାର ଦେଇଯିବି !"

ତରୁଣ ସେଦିନ ଉତ୍ତର ଦେଇଥିଲା—"ଗୁରୁ, ଯେଉଁଦିନ ଯାଏ ଆପଣ ସଶରୀରରେ ସ୍ୱୟଂ ବିଦ୍ୟମାନ ସେତେଦିନ ଯାଏ ଏ ବୀଣାକୁ ଧାରଣ କରିବା ପାଇଁ କେହି ଯୋଗ୍ୟ ହୋଇ ନ ପାରନ୍ତି ।"

ବୃଦ୍ଧର ଦୁଇ ଚକ୍ଷୁରୁ ଝର ଝର ହୋଇ ଲୁହ ଝରି ପଡ଼ିଲା । ସେହି ଲୁହହିଁ ତାଙ୍କୁ ପ୍ରମାଣ ଦେଇ କହୁଥିଲା—'ହଁ, ତୁ ଜୀବିତ ଅଛୁ ।'

ରାଜାଙ୍କର ଗୋଟିଏ ବୀଣାର ପ୍ରୟୋଜନ ପଡ଼ିଲା । ସେ ସ୍ଥିର କଲେ ରାଜ୍ୟର ସର୍ବୋତ୍କୃଷ୍ଟ ବୀଣା ସେ କ୍ରୟ କରିବେ । ସ୍ୱର୍ଗତା ରାଣୀଙ୍କର ସମାଧି ମନ୍ଦିରରେ ସେ ବୀଣା ପ୍ରତିଦିନ ସନ୍ଧ୍ୟାରେ ବାଜିବ । ରାଣୀଙ୍କର ଅନ୍ତିମ କାମନା ତାହାହିଁ ଥିଲା ।

ବଣିକମାନେ ଦେଶ ଦେଶ ବୁଲି ଅନୁସନ୍ଧାନ କଲେ । ମାତ୍ର ଉତ୍କୃଷ୍ଟ ଧରଣର ବୀଣା ଦୁଷ୍ପ୍ରାପ୍ୟ ହେଲା । ଅବଶେଷରେ ଲୋକ ମୁଖରୁ ବୃଦ୍ଧର ବୀଣା ବାଦନ ସମ୍ବନ୍ଧରେ ଭୂରି ଭୂରି ପ୍ରଶଂସା ଶୁଣି ସେହି କୁଟୀର ଦ୍ୱାରରେ ପ୍ରବେଶ କଲେ ।

ଅନ୍ଧକାର ରଜନୀରେ ବୃଦ୍ଧର ବୀଣା ଗମ୍ଭୀର ଓ ମନ୍ଥର ନାଦରେ ମନ୍ଦ୍ରିତ ହେଉଥିଲା । ରାଜଦୂତ ବଣିକଗଣ ବୀଣା ଧ୍ୱନିରେ ମୁଗ୍ଧ ହୋଇଗଲେ ।

ବୃଦ୍ଧଙ୍କୁ ପଚାରିଲେ—ବୃଦ୍ଧ, ଏ ବୀଣା ବିକ୍ରୀ କରିବ ?

ବୃଦ୍ଧ ପରିହାସ କରି କହିଲା—ବୀଣାର ମୂଲ୍ୟ କିଏ ଦେବ !

"ନିଜେ ରାଜା ।"

'ଅସମ୍ଭବ ।' ବୃଦ୍ଧ ନିଶ୍ଚିତ କଣ୍ଠରେ କହିଲା—

"ଯଦି ରାଜାଙ୍କର ଆଜ୍ଞା ହୁଏ !" ଦୂତମାନେ ପୁଣି ପ୍ରଶ୍ନ କଲେ ।

"ତଥାପି ଏ ବୀଣା ମୁଁ ଦେଇ ପାରିବି ନାହିଁ ।" ବୃଦ୍ଧ ଉତ୍ତର ଦେଲା ।

ରାଜା ନିଜେ ସମ୍ବାଦ ଦେଲେ—ବୃଦ୍ଧ ଏ ବୀଣା ଦାନ କର ।

ବୃଦ୍ଧର ସେଇ ଉତ୍ତର—ଅସମ୍ଭବ ।

ରାଜା ପ୍ରଲୋଭନ ଦେଲେ—ରାଜ୍ୟର ଏକ ଚତୁର୍ଥାଂଶ ପାଇବ, ବୀଣା ଦିଅ ।

ବୃଦ୍ଧର ତଥାପି ସେଇ ଉତ୍ତର—ଅସମ୍ଭବ ।

ରାଜଦୂତମାନେ ଭୟ ଦେଖାଇଲେ—ବୃଦ୍ଧ ! ରାଜା ଆଜ୍ଞା ଅନ୍ୟଥା ହୋଇ ନପାରେ ।

ବୃଦ୍ଧ ଉତ୍ତର ଦେଲା—ମନୁଷ୍ୟର ହୃଦୟ ମଧ୍ୟ ଅବାଧ ହୋଇ ନପାରେ ।

କିନ୍ତୁ କାର୍ଯ୍ୟକ୍ଷେତ୍ରରେ ରାଜ ଆଜ୍ଞାରହିଁ ଜୟ ହେଲା । ରାଜଦୂତ ମାନେ ବଳପୂର୍ବକ ବୃଦ୍ଧର ଏକମାତ୍ର ସମ୍ବଳ ବୀଣାଟିକୁ ଅପହରଣ କରିନେଲେ ।

ବୃଦ୍ଧ ଦୁଃଖରେ ଶଯ୍ୟାଶାୟୀ ହୋଇଗଲା । ତରୁଣଟି ତା' ପାଖରେ ବସି ଶୁଶ୍ରୁଷା କରୁଥାଏ । ବୃଦ୍ଧ ବଡ଼ କଷ୍ଟରେ ଆରମ୍ଭ କଲା—ବତ୍ସ, ମୋର ଆଉ କିଛି ନାହିଁ ତୋତେ ଦେଇଯିବାକୁ ।

ତରୁଣ ନୀରବ ରହିଲା ।

'ଜାଣୁ ?' ବୃଦ୍ଧ ଆରମ୍ଭ କଲା—ମୋ ପାଖରେ ଗୋଟିଏ ଅମୂଲ୍ୟ ରତ୍ନ ଥିଲା—ତୋରି ଯୋଗ୍ୟ—ଆଃ-କି ଦାରୁଣ, କି ନିଷ୍ଠୁର ସେ—ଏଇ ରଜା ଭଳି ଆଉ ଏକ ଅତ୍ୟାଚାରୀ ପଶୁ—ଦଇବ—ତାକୁ ନେଇଗଲା ।

'ସେଦିନ ଜାଗର ପୁନେଇ—'

ବୃଦ୍ଧ ଆଖିରୁ ଝରଝର ହୋଇ ଲୁହ ଝରି ପଡ଼ିଲା । ତରୁଣ ସେଇ ଲୁହ ପୋଛି ଦେଇ ଦେଇ ବାରୁଥିଲା—ଓଃ-କି ତଳା । ଯାହାପାଇଁ

ଏ ଲୁହ ଏତେ ତରଳ ହୋଇ ଜନ୍ମ ହୋଇଛି ସେ କେତେ ଉତ୍ତେଜକ, ଉନ୍ମାଦକ ହୋଇ ନଥିବ ।

'ସେ ବୀଣା ବଜେଇବାକୁ ଭାରି ଭଲ ପାଏ । ସେଥିପାଇଁ ମୁଁ ତା' ନାଁ ରଖିଥିଲି—ବୀଣା । ଏଇ ବୀଣା ଖଣ୍ଡି ତା'ର ଜୀଅନ୍ତା ସ୍ମୃତି ହୋଇ ରହିଥିଲା ! ଆଃ—ସେ ବି ଗଲା—ଆଉ ଅପଣାର ବୋଲି କହୁଛ ନାହିଁ ଯୁବକ !'

ଉଭୟେ କାନ୍ଦୁଥିଲେ—ବୃଦ୍ଧର ଶ୍ୱାସ ଉଠିଲା—ଊର୍ଦ୍ଧ୍ୱମୁଖୀରେ ।

ରାଜଦୂତମାନେ ଆସି କହିଲେ—ବୃଦ୍ଧ, ରାଜା ଆଜ୍ଞା ତମେ ସେ ବୀଣାର ବାଦନ କୌଶଳ ଶିଖାଇ ଦିଅ । ସେ ବୀଣା ତମ ଛଡ଼ା ସମସ୍ତଙ୍କ ହାତରେ ବେସୁରା ବାଜୁଛି ।

ରାଜା ଆଜ୍ଞା ଅନ୍ୟଥା ହେଲା । ମନୁଷ୍ୟର ହୃଦୟ ଅବାଧହୋଇ ପାରିଲା ନାହିଁ । ବୃଦ୍ଧର ହୃଦ୍‌ଯନ୍ତ୍ର ସ୍ତବ୍ଧ ହୋଇଗଲା ।

ସେ ବୀଣା ବହୁଦିନ ଯାଏ ରାଣୀଙ୍କର ସମାଧି ମନ୍ଦିରରେ ସେମିତି ଅବହେଳିତ ହୋଇ ଝୁଲୁଥିବାର ଦେଖା ଯାଇଥିଲା । ତାପରେ କେଉଁଦିନ କିପରି ସେଠୁ ଅପସାରିତ ହୋଇଗଲା ତା' କେହି କହିପାରନ୍ତି ନାହିଁ ।

ଆଉ ସେ ତରୁଣ ! ଖଣ୍ଡିଏ ନାଉଟୁମ୍ବି ଧରି ଏଇ ଗାଁ ବାଟରେ ଭଜନ ଗାଇ ବୁଲେ ।

# ପୂଜାରଣୀ

ଶଙ୍ଖ ବାଜି ଉଠେ । ଘଣ୍ଟା ଘଡ଼ି ରବ ଉଚ୍ଛୁଳି ପଡ଼େ । ହରି-ବୋଲ୍ ଧ୍ୱନିରେ ନାଟ ମନ୍ଦିର ଫାଟି ଯାଉଥିଲା ପରି ଲାଗେ । ହୁଳହୁଳି ଶବ୍ଦ ପଡ଼ିଯାଏ । ଆରତିରେ ମଦନ ଗୋପାଳଙ୍କର ମୁଖଶ୍ରୀ ଝଲସି ଉଠେ ।

ଆରତି ବଢିଯାଏ । ଦେବତାଙ୍କ ପାଦତଳେ ସମସ୍ତେ ପ୍ରଣାମ ଜଣାନ୍ତି । ସ୍ୱର୍ଗ ଜଳ ସିଞ୍ଚି ହୋଇଯାଏ । ବୈଷ୍ଣବ ଧୀରେ ଧୀରେ ଗୀତଗୋବିନ୍ଦ ଆବୃତ୍ତି କରେ—'ପ୍ରଳୟ ପୟୋଧି ଜଳେ—'

ବୈଷ୍ଣବର କନ୍ୟା ପାଳି ଧରେ—ପ୍ରଳୟ ପୟୋଧି ଜଳେ ।

ଦଶ ଅବତାର ଶେଷ ହୋଇଯାଏ । ବୈଷ୍ଣବ ଗାଏ—'ସ୍ରୀତ କମଳା କୁଚ ମଣ୍ଡଳ ହେ ଧୃତକୁଣ୍ଡଳ ହେ' । କନ୍ୟା ଧୀରେ ଧୀରେ ସେ ଗୀତର ତାଳରେ ଆଗକୁ ପାଦ ବଢ଼ାଏ । ନୂପୁରର ସିଞ୍ଜିନୀ ସଙ୍ଗୀତକୁ ମଧୁରତର କରିଦିଏ । ବାଳିକାର ନୃତ୍ୟଭଙ୍ଗୀରେ କବି-ଙ୍କର ଭାବ ଜୀବନ୍ୟାସ ପାଇଯାଏ । ସମସ୍ତେ ତନ୍ମୟ ହୋଇ ଚାହିଁ ରହନ୍ତି । ବୈଷ୍ଣବ କନ୍ୟା 'ଜୟ ଜଗଦୀଶ ହରେ' କହି ଭୂମିରେ ଲୋଟି ପଡ଼ୁଥାଏ ଯେମିତି ।

ବୈଷ୍ଣବର ପରିଚୟ କେହି ଜାଣନ୍ତି ନାହିଁ । କେତେବର୍ଷ ତଳେ ଅତି ଜୀର୍ଣ୍ଣଶୀର୍ଣ୍ଣ ଅବୟବ ଧେନ ଗୋଟିଏ ଲୋକ ଏଇ ଗ୍ରାମରେ ପହୁଞ୍ଚିଥିଲା । ସାଙ୍ଗରେ ଆଠ ନ' ବର୍ଷର ଗୋଟିଏ କୁମାରୀ କନ୍ୟା । ଲୋକଟି କେବଳ 'ହରି ହରି' ଭଜୁଥାଏ । ଖାଇବା ପିଇବା

ପ୍ରତି ଦୃଷ୍ଟି ନାହିଁ । ଯିଏ ଯାହା ଦିଏ, ଖାଏ । ନହେଲେ ନାହିଁ । ଖାଇବାକୁ ମାଗେ ନାହିଁ, ମନେହୁଏ ତାର ଯେମିତି କଉଠି ବଡ଼ ଗୋଟାଏ ଭରସାର ସ୍ଥଳ ରହିଛି । ତା'ର ବଳରେ ସେ ନାଚୁଛି, କୁଦୁଛି, ଖାଉଛି, ବୁଲୁଛି । ଗ୍ରାମବାସୀମାନେ ତା ପାଇଁ ଖଣ୍ଡେ କୁଡ଼ିଆ ବାନ୍ଧିଦେଲେ । ଗଲା ପାଞ୍ଚବର୍ଷ ହେବ ସେଇ କୁଡ଼ିଆଟି ତାର କ୍ଷୀଣ ରୁଗ୍ଣ ଶରୀରକୁ ଆଶ୍ରୟ ଦେଇଛି । ଗଲା ପାଞ୍ଚବର୍ଷ ହେବ ସେଇ ଜୀର୍ଣ୍ଣ କାୟାର ଶୀର୍ଣ୍ଣ କଣ୍ଠ ମଧ୍ୟରୁ ଅମୃତମୟ ସଙ୍ଗୀତ ଭାସି ଆସି ପ୍ରତିଦିନ ସନ୍ଧ୍ୟାରେ ଲୋକଙ୍କୁ ମୁଗ୍ଧ କରୁଛି ।

ବୈଷ୍ଣବର ଇତିବୃତ୍ତ ମଧ୍ୟ କେହି ଜାଣନ୍ତି ନାହିଁ । ବୈଷ୍ଣବର କଥା କହେ, ତାଙ୍କର ଘର ଥିଲା; ସେ ଘର କୁଆଡ଼େ ଉଡ଼ିଗଲା ସେ କହିପାରିବ ନାହିଁ । ତା ଗାଁ ନା ତାର ମନେ ନାହିଁ । ମନେ ଥିଲା । ଯେତେବେଳେ ତାର ମନେ ଥିଲା ସେତେବେଳେ କେହି ପଚାରି ନାହାନ୍ତି । ଆଜି ସେ ଭୁଲିଗଲାଣି । କିନ୍ତୁ ସେ ଗାଁ ଉଭେଇ ଗଲାପରି ଏକାରାତିକେ କୁଆଡ଼େ ପଳେଇଲା ସେ କହିପାରିବ ନାହିଁ । ସକାଳୁ ସେ ଦେଖିଲା ବାଠ ମଝିରେ ସେ ଆଉ ତା ବାପ । ଗାଁଟା କୁଆଡ଼େ ପଳେଇଛି । ସେ ଗାଁକୁ ଖୋଜିଲା । ଆଉ ପାଇଲା ନାହିଁ । ତାପରେ କେତେ ଗାଁ ଦେଖିଛି, କେତେ ଗାଁରେ ରହିଛି । କିନ୍ତୁ ତା' ଗାଁ ପରି ଗାଁ ତା' ଆଖିକି କେହି ଦିଶିଲା ନାହିଁ ।

ଆଉ ତା' ମା !

ହଁ ତା ମା ବି । ସେଇ ଗାଁ ସାଙ୍ଗରେ କୁଆଡ଼େ ପଳେଇଛି । ସେ ଘରେ ସେ ଏକୁଟିଆ ଥିଲା । ସେ ଡାକିଲା ତା ମା'କୁ । ମା' ଶୁଣିଲା ନାହିଁ । ବାପ କହିଲା ମାମୁଁ ଘରକୁ ଯାଇଛି । ସେ ବି ମାମୁଁ ଘରକୁ ଯିବ ବୋଲି କାନ୍ଦିଲା । କିନ୍ତୁ କାହିଁ ତା' ମାମୁଁଘର ।

ବୈଷ୍ଣବକୁ ପଗ୍ଚରିଲେ ସେ କେବଳ ଉପରକୁ ହାତ ଠାରିଦିଏ, ଧର୍ମ-ଧର୍ମ !

ସନ୍ଦେହ ହୁଏ, ବୈଷ୍ଣବର କ'ଣ ଏ ନିଜ ଝିଅ ! ଲୋକେ ପଗ୍ଚରନ୍ତି—ବୈଷ୍ଣବ, ଏ କ'ଣ ତମର ନିଜ ଝିଅ ?

ବୈଷ୍ଣବ ହସେ । କହେ,—'ନା ।' ଠାକୁରଙ୍କ ଆଡ଼କୁ ଆଖି ଭିଡ଼ାଇ ଦେଇ ଦେଖାଇ ଦିଏ—'ତା'ର ।'

ବୈଷ୍ଣବ କନ୍ୟାକୁ ପଗ୍ଚରିଲେ, ତୋ ବାପା କିଏ ?—ସେ ଉତ୍ତର ଦିଏ—ମୋ ବାପା ତମେ—ମୋ ବାପା ସମସ୍ତେ ।

ସମସ୍ତେ ହସନ୍ତି । କନ୍ୟା ଗମ୍ଭୀର ହୋଇଯାଏ । କଇଁ ଫୁଲର ସଜ ପାଖୁଡ଼ା ପରି ଧଳା ଧଳା ତରି ଆଖି ତାର ସରମରେ ଜର ଜର ହୋଇ ଉଠେ । ଗୋଲା କଜଳର ବିନ୍ଦୁ ଦୁଇଟି ପରି ଡୋଳା ଯୋଡ଼ିକ ଢଳ ଢଳ ହେଉଥାଏ ତା'ର ଭିତରେ ।

ବୈଷ୍ଣବ କନ୍ୟା ନାଚେ । ସମସ୍ତେ ଜାଣନ୍ତି ନାଚେ । କିନ୍ତୁ ସେ ଜାଣେ ସେ ପୂଜା କରୁଛି । ବୈଷ୍ଣବ ମଧ୍ୟ ଜାଣେ, କନ୍ୟା ତାର ପୂଜାରିଣୀ । ସେ ନାଚିଲା ବେଳେ ମନେହୁଏ ତାର ଫିଟିଲା ପରି ଦେହର ପ୍ରତି ଅଙ୍ଗ ଯେପରି ଗୋଟିଏ ଗୋଟିଏ ସ୍ୱତନ୍ତ୍ର ନର୍ତ୍ତକୀ ।

ଆରତି ଶେଷ ହୁଏ । ପ୍ରତିଦିନ ଆରତି ଶେଷରେ ନାଚେ ।

ପ୍ରତିଦିନ ବହୁ ଲୋକ ଆସନ୍ତି । ବୈଷ୍ଣବର ଗୀତ ଗୋବିନ୍ଦ ଶୁଣିବାପାଇଁ, ଆଉ ବୈଷ୍ଣବ ବାଳିକାର ନାଚ ଦେଖିବା ପାଇଁ । ବୈଷ୍ଣବର ଗୋଟିଏ ପାଖରେ ଗୋଟିଏ କ୍ଷୁଦ୍ର ଥାଳ ଥୁଆ ହୋଇଥାଏ । ଯାହାର ଯାହା ଇଚ୍ଛା ହୁଏ ସେଇଥିରେ ଦେଇଯାଏ । ବୈଷ୍ଣବର ସେଇ ଜୀବିକା ।

ଦିନେ ନୃତ୍ୟ ଶେଷରେ ବୈଷ୍ଣବ ଦେଖିଲେ ଗୋଟିଏ ସୁବର୍ଣ୍ଣ ମୁଦ୍ରିକା । ସେଦିନ ବୈଷ୍ଣବର ମନରେ ସନ୍ଦେହର ରେଖା ପାତ୍ର ମଧ୍ଯ ହୋଇ ନଥିଲା । ପ୍ରଭୁଙ୍କର କୃପା ବୋଲି କହି ବୈଷ୍ଣବ କନ୍ୟାର ଅଙ୍ଗୁଳିରେ ପିନ୍ଧାଇ ଦେଇଥିଲା । ମନେ ମନେ ଭାବିଲା — ପ୍ରଭୋ, ଏ କନ୍ୟା ତୋତେଇ ଦାନ କଲି ।

ତହିଁ ଆରଦିନ ପୁଣି ସ୍ୱର୍ଣ୍ଣ ମୁଦ୍ରା । ଦିନେ ନୁହେଁ, ଦୁଇଦିନ ନୁହେଁ, ପ୍ରତିଦିନ । ବୈଷ୍ଣବ ଆଶ୍ଚର୍ଯ୍ୟ ହୋଇଗଲା । ଆର୍ତ୍ତି ସ୍ୱରରେ ବୈଷ୍ଣବ ପ୍ରାର୍ଥନା କଲା—ପ୍ରଭୋ ଏ କି ପ୍ରଲୋଭନ—ତ୍ରାହି କର— ତ୍ରାହି କର ! !

ପ୍ରଭୁ ଶୁଣିଲେ ନାହିଁ । ପ୍ରତିଦିନ ବୈଷ୍ଣବର ଥାଳରେ ସ୍ୱର୍ଣ୍ଣ-ମୁଦ୍ରା ପଡ଼େ । କିଏ ଦିଏ କେତେବେଳେ ଦିଏ ବୈଷ୍ଣବ ଲକ୍ଷ କରିପାରେ ନାହିଁ । ପ୍ରତିଦିନ ବୈଷ୍ଣବ ନିଷ୍ଟଯ୍ନ କରେ, ଆଜି ସେ ଲକ୍ଷ କରିବ । କିନ୍ତୁ ଗୀତ ଗୋବିନ୍ଦ ଗାଇଁ ଗାଇଁ ସେ ଆତ୍ମହରା ହୋଇଯାଏ । ଭୁଲିଯାଏ ସ୍ୱର୍ଣ୍ଣମୁଦ୍ରା କଥା, ସେତିକି ବେଳେ ସମ୍ଭବତଃ ସ୍ୱର୍ଣ୍ଣମୁଦ୍ରା ପଡ଼େ ।

ବୈଷ୍ଣବ କନ୍ୟାକୁ ପଚାରିଲା—ସତ କହ, କିଏ ଏ ମୁଦ୍ରା ଦିଏ ।

ବାଳିକା କହେ—ମୁଁ ଜାଣେ ନାହିଁ ।

ବୈଷ୍ଣବ କୈତବ କ୍ରୋଧ ପ୍ରକାଶ କରି ଦିନେ କହିଲା—ସତ କହ ଏ ବିଷୟରେ ତୁ କ'ଣ ଜାଣୁ, ନହେଲେ ଚିରଦିନ ପାଇଁ ତୁ ମୋତେ ହରାଇବୁ । କହ, ଏ ମୁଦ୍ରାର ମୋହ ବେଶୀ ନା ମୋର ମୋହ ବେଶୀ ।

ବୈଷ୍ଣବ ବାଳିକା ଲୁଚାଇ ପାରିଲା ନାହିଁ, କହିଲା—ପିତା, ମୁଁ ସତ କହୁଛି, କାହାରିକି କେବେ ଦେବାର ଦେଖି ନାହିଁ । ତେବେ ମନେ ହେଉଛି ମଦନ ଗୋପାଳ ନିଜେ ଦିଅନ୍ତି !"

"ମଦନ ଗୋପାଳ ନିଜେ ଦିଅନ୍ତି !" ବୈଷ୍ଣବ ଚକିତ ହୋଇ ପୁଚ୍ଛିଲେ ।

ବାଳିକା ପୁଣି କହିଲା—"ମୁଁ ଯେତେବେଳେ ନାଚି ନାଚି ଥକି ପଡ଼େ, କିନ୍ତୁ ତମର ଗୀତ ବନ୍ଦ ହୁଏ ନାହିଁ; ମୋତେ ଭାରି କଷ୍ଟହୁଏ; ପାଦ ଅବଶ ହୋଇ ଆସେ; କପାଳରୁ ଝାଳ ବହିଯାଏ; ମନେହୁଏ ମୂର୍ଚ୍ଛା ହୋଇ ତଳେ ପଡ଼ିଯିବି; ସେତେବେଳେ ମୁଁ କାତର ହୋଇ ଡ଼ାକେ—ଗୋପାଳ ମୋତେ ରକ୍ଷାକର ! ନାଚ ବନ୍ଦ ହେଲେ କିମ୍ବା ତାଳ ଭାଙ୍ଗିଗଲେ ମହାପାପ ହେବ, ମୋତେ ପାପରୁ ତ୍ରାହି କର !—ସେତେବେଳେ ମୋର ପ୍ରାୟ ଚେତନା ନଥାଏ; ସେଇ ଅଧ ଚେତନ ଅବସ୍ଥାରେ ମୋର ମନେହୁଏ ଗୋପାଳ ଉଠି ଆସନ୍ତି ସିଂହାସନରୁ; ମୋ ମୁଣ୍ଡରେ ହାତ ଦେଇ ପୁଣି ଚାଲିଯାନ୍ତି; ଚାଲିଯାନ୍ତି ନାହିଁ, ମନେ ହୁଏ ସଭାଟିରେ ଯାଇ ଯେମିତି ବସନ୍ତି—"

"ତାପରେ ତାପରେ—"

"ତାପରେ ମୁଁ ସୁସ୍ଥ ହୋଇ ଉଠେ । ମନେହୁଏ ମୁଁ ଏଇ ନାଚ ଆରମ୍ଭ କରିଛି । ଦ୍ୱିଗୁଣ ଉତ୍ସାହରେ ମୁଁ ନାଚେ । ମୋ ପାଦ ଏତେ ଚଞ୍ଚଳ ହୋଇ ଉଠେ ଯେ ମୋ ଆୟତ୍ତରେ ରହେ ନାହିଁ । ତଥାପି କେବେ ବେତାଳ ହୁଏ ନାହିଁ ।"

"ମା, ତୋ ଭଳି କନ୍ୟାପାଇ ମୁଁ ଧନ୍ୟ ହେଲି । ମୁଁ ଗୋପାଳଙ୍କୁ ସନ୍ଦେହ କରି କି ଅପରାଧ କରିଛି ! ହେ ପ୍ରଭୋ, ପତିତ ପାବନ, ତ୍ରାହି କର !"

ପୁଣି ସନ୍ଧ୍ୟା ଆସେ । ପୁଣି ଆରତି ହୁଏ । ବୈଷ୍ଣବ ଗୀତ-ଗୋବିନ୍ଦ ବୋଲେ ଆତୁର ମନପ୍ରାଣ ଦେଇ । ବାଳିକା ନାଚେ ପ୍ରଭୁଙ୍କ ପଦରେ ଆତୁର ଆଗ୍ରହରେ ନିଶ୍ଚଳ ହେଇପଡ଼ି । ଲୋକେ କହନ୍ତି—ଏ ମର୍ତ୍ତ୍ୟର ମାନବୀ କେବେଁ ନୁହେଁ ।

ଧନକର କଥା । ବୃଦ୍ଧ ବିଭୋର ହୋଇ ଗୀତଗୋବିନ୍ଦ ଗାଉଛି । ମନେ ହେଲା ଗୋପାଳ ଆସି ବାଳିକାର ଶିରରେ ହାତ ଦେଲେ । ବାଳିକା ଉନ୍ମତ୍ତ ହୋଇ ନାଚି ଉଠିଲା । ମଦନ ଗୋପାଳ ଗୋଟିଏ ସ୍ୱର୍ଣ୍ଣମୁଦ୍ରା ଦରିଦ୍ର ବୈଷ୍ଣବର ଥାଳରେ ଦାନ କଲେ । ବୈଷ୍ଣବ ଆକୁଳ ହୋଇ ପ୍ରାର୍ଥନା କଲା—ପ୍ରଭୁ, ପ୍ରଭୁ, ଆଉ ପରୀକ୍ଷା କର ନାହିଁ ପ୍ରଭୁ ! ମୁଁ କେବେ ତମଠାରୁ ଅର୍ଥ ଆଶା କରେ ନାହିଁ । ମୋତେ କାହିଁକି ଏ ବନ୍ଧନରେ ବାନ୍ଧୁଛ । ମୋ କୁଟୀରରେ ଏ ସ୍ୱର୍ଣ୍ଣମୁଦ୍ରା ରଖିବା ପାଇଁ ଯେ ଆଉ ସ୍ଥାନ ନାହିଁ । କିନ୍ତୁ ପ୍ରଭୁ ଶୁଣିଲେ ନାହିଁ । ସ୍ୱର୍ଣ୍ଣମୁଦ୍ରା ଦେଇ ମଦନ ଗୋପାଳ ତ୍ରିଭଙ୍ଗରେ ଠିଆ ହେଲେ । ବଂଶୀ ବାଜି ଉଠିଲା । ବୈଷ୍ଣବ ଗାଇଲା—

ନାମ ସମେତଂ କୃତ ସଂକେତଂ ବାଦୟତେ ମୃଦୁ ବେଣୁମ୍
ବହୁମନୁତେ ତନୁତେ ତନୁ ସଂଗତ ପବନ ଚଳିତମପି ରେଣୁମ୍

ବାଳିକା ଆତ୍ମହରା ହୋଇ ନାଚି ଉଠିଲା । ବୈଷ୍ଣବ ଭାବ ଏବଂ ରାଗରେ ମୁଗ୍ଧ ହୋଇ ଯାଇଥାଏ ।

ହଠାତ୍ ଏ କ'ଣ ହେଲା । ବଜ୍ରପାତ ହେଲା ପରି ବୈଷ୍ଣବର ଧ୍ୟାନ ଭଗ୍ନ ହୋଇଗଲା । ଚମକି ପଡ଼ି ବୈଷ୍ଣବ ଚାହିଁଲା—ନର୍ତ୍ତକୀର ପଦ ପ୍ରକ୍ଷେପ ସଙ୍ଗୀତର ସ୍ୱର ସହିତ ସମତାଳରେ ନାହିଁ ।

ଉପ୍ପରେ ବୈଷ୍ଣବର ସ୍ୱର ଥର ଉଠିଲା । ରକ୍ଷା କର, ରକ୍ଷା କର ମଦନ ଗୋପାଳ !

କାହାନ୍ତି ମଦନ ଗୋପାଳ ! ମଦନ ଗୋପାଳଙ୍କ ପ୍ରତିମୂର୍ତ୍ତିକି ଚାହିଁ ଦେଖିଲା, ସେ ସେହି ଜଡ଼ ଅଚେତନ ମଦନ ଗୋପାଳ । କନ୍ୟାର ଦୃଷ୍ଟି ସେ ପାଷାଣ ପ୍ରତିମା ଉପରେ ନାହିଁ । କନ୍ୟାର ବନ୍ଦନା ସେ ମୂକ ନିର୍ବାକ ଦେବତାଙ୍କ ଅଭିମୁଖରେ ଗତି କରୁ ନାହିଁ । କନ୍ୟାର ପୂଜାପାଇଁ ସତେ ଯେମିତି ସେ ଜୀବନ୍ତ ଦେବତା ଜଡ଼ ପାଲଟି ଯାଉଛନ୍ତି ।

ଅଉ କନ୍ୟା !

ଶ୍ରେଷ୍ଠୀ ଯୁବା ନୃତ୍ୟ ଶେଷ ହେବା ପୂର୍ବରୁ ସମ୍ଭବତଃ କାର୍ଯ୍ୟ ବ୍ୟସ୍ତ ଥାଇ ଅଳ୍ପ ଅପ୍ରତ୍ୟାଶିତ ଭାବରେ ଚାଲି ଯାଉଥିଲା । କନ୍ୟାର ଦୃଷ୍ଟି ଦ୍ୱାର ଅଭିମୁଖରେ ।

ବନ୍ଦନା ଶେଷ ହେଲା । ନୃତ୍ୟ ସ୍ଥଗିତ ରହିଲା । ବୈଷ୍ଣବ କୁଟୀରକୁ ଯାଇଁ କେବଳ ମଦନ ଗୋପାଳ ମଦନ ଗୋପାଳ ବୋଲି ରଡ଼ି ଛାଡ଼ି କାନ୍ଦିଲା ।

କନ୍ୟା ଡାକିଲା—ବାପା ବାପା, କାନ୍ଦୁଛ କାହିଁକି ?

ବୈଷ୍ଣବ କହିଲା—ଆଜି ମଦନ ଗୋପାଳ ମନ୍ଦିର ଛାଡ଼ି ଚାଲିଗଲେ ।

ସେଇଦିନ ରାତିରେ । ବୈଷ୍ଣବର କନ୍ୟା ଶୋଇ ପଡ଼ିଛି । ବୈଷ୍ଣବ ସମସ୍ତ ସ୍ୱର୍ଣ୍ଣମୁଦ୍ରା ଏକତ୍ରିତ କରି କନ୍ୟାର ଉପାଧାନ ତଳେ ଧୀରେ ଧୀରେ ଥୋଇ ଦେଇ କେଉଁଆଡ଼େ ଚାଲିଗଲା କେହି ଜାଣିଲେ ନାହିଁ ।

ବୈଷ୍ଣବର କନ୍ୟା ଓ ଶ୍ରେଷ୍ଠୀର ପୁତ୍ର ବଧୂ ବୈବାହର ଚତୁର୍ଥ ଦିବସରେ ମଦନ ଗୋପାଳଙ୍କୁ ଭେଟି ଦେବାକୁ ଆସିଥିଲେ । କନ୍ୟା ସେଦିନ ଠାକୁରଙ୍କୁ ପଚାରିଲା—ଠାକୁରେ ଏ କ'ଣ ତମର ପୂଜା ନୁହେଁ ? ପତି କ'ଣ ନାରୀର ଜୀବନ୍ତ ଦେବ ବିଗ୍ରହ ନୁହେଁ ?

ମଦନ ମୋହନ ସେ ଅକୁଳ ପ୍ରଶ୍ନର କି ଉତ୍ତର ଦେଲେ କିଜାଣି !

ସେତିକିବେଳେ ଜଣେ କିଏ ଗାଇ ଆରମ୍ଭିଲା—

ଭାଙ୍ଗି ଯାଉ ମୋର ମନ ଅଟ୍ଟାଳିକା
ଝରିପଡୁ ଆଶା କୁସୁମ କଳିକା
ସଂସାରର ନାଠ ସାରଦିଅ ମୋର ହାଠ କରି ଦିଅ ଶୂନ୍ୟ ହେ,'

ଶ୍ରେଷ୍ଠୀ ବଧୂ ଚମକି ପଡି ଗୁହାଁଲା—ଗାୟକ ତାର ବୃଦ୍ଧ ପିତା ନୁହେଁ ।

# ନିଛାଟ ରାତି

ନିଛାଟ ରାତି । ଏକୁଟିଆ । ଆଖି ବୁଜିଦିଏ । ଭାବିକି, ଏ ଏକୁଟିଆ ଜୀବନର ନିରାଟ ସତ କଥାକୁ ଆଜି କେହି ଜଣେ ଆସି ମିଛ ପ୍ରମାଣ କରିଦେଇ ଯାଉ । ମଣିଷର ସ୍ୱଭାବ ସେ ସବୁବେଳେ ସତଟାକୁ ଘୋଡ଼େଇ ରଖେ । ରଜ୍ଜୁରେ ସେ ସାପର ଭ୍ରମ ଦେଖେ । ସାପକୁ ସେ ରଜ୍ଜୁ କରି ଖେଳାଏ । ଝୁଣ୍ଟା ବରଗଛକୁ ଭୂତ ବୋଲି ଡରେ । ମନ୍ତ୍ର ଫୁଙ୍କି ମଣିଷ ଦେହରୁ ଭୂତ ଛଡ଼ାଏ । ସେ ଲୁଗା ପିନ୍ଧେ—ପୋଷାକ ପରିଚ୍ଛଦ—ଖାଲି ତାର ନଗ୍ନ ସତ୍ୟଟାକୁ ଲୁଚେଇ ରଖିବା ପାଇଁ । ଏଇଟା ସଭ୍ୟତା—ଏଇଟା ଶିକ୍ଷା ଆଉ ତମେ ଆମେ ଯାହାକୁ ଆଦର୍ଶ ଭଲ ପାଇବା କହୁଁରେ, ସେଇଟା ବି ଏଇମିତି ଗୋଟାଏ ନଗ୍ନତାର ଆବରଣ । ମୁଁ କ'ଣ ଭଲ ପାଇବା ଖୋଜୁଛି ଏଇ ନିରାଟ ସତ୍ୟଟାକୁ ଭ୍ରମ କରି—ଏଇ ନିଛାଟ ରାତିକୁ ତମର ତାର ନିଛାଟିଆ ଭାଙ୍ଗିବାକୁ ଯାଉଛି ?

ଏ କଥା କହିଲେ ମତେ ଲୋକେ ହସିବେ । ମାଠାରୁ ସ୍ତ୍ରୀ ବଡ଼ ହୋଇଯାଏ । ତଥାପି ମଣିଷ ତା ଅସ୍ମାର ଏଇ ସତ୍ୟକୁ ଢାଙ୍କି ରଖିବା ପାଇଁ ମା'କୁ ଚେଷ୍ଟା କରି ବଡ଼ ବୋଲି ଦେଖେଇ ହୁଏ । ଟାଏ—ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ—ଆକାଶଠୁଁ ବଡ଼ ପିତା ମାତା ବଡ଼ ପୃଥିବୀ ଅପେକ୍ଷା । ସେ ମଣିଷଙ୍କୁ ତ କେହି ହସୁ ନାହିଁ—ମୋତେ କାହିଁକି ହସିବେ ।

ମଣିଷର ଏଇ ଆତ୍ମ ପ୍ରତାରଣାର ଅର୍ଥ କ'ଣ ? ଏହି ଭଲ ପାଇବାର ଅର୍ଥ କ'ଣ ? କେହି କହି ପାରିବ ? କେହି ଭାବିଚ ? ମୁଁ ଭାବି ପାରୁ ନାହିଁ । ଏଇ ନିରନ୍ଧ୍ର ରଜନୀ ଭଳି ମୁଁ ନିଜେ ନିଜକୁ

ଦେଖିପାରୁ ନାହିଁ । ବେଳେ ବେଳେ କଳ୍ପନା କରେ, ସେ ଆସି ବସିଛି, ମୋ ପାଖରେ । ଧୀରେ ଧୀରେ ତା ରେଶମୀ କେଶ ଖୋଲି ତା' ମଥାଟି ମୋ' କୋଳ ଉପରେ ଥୋଇଲା । ଖାଲି କଳ୍ପନା । କହୁଛି—ମଥାରେ ତାର ବ୍ୟଥା । ମୁଁ ହାତ ଦେଲି । ମୁଁ ତାର ଦେହକୁ ଛୁଇଁଥିଲି । ସେ ସିନା ଛୁଇଁଥିଲା, ମୁଁ ଛୁଇଁ ନଥିଲି । ଏଇ ଛୁଇଁଲି । ମଥାକୁ ଧୀରେ ଧୀରେ ଆଉଁସି ଦେଲି । ଅବାଧ କେଶକୁ ଶାସନ କରୁଥିଲି । ମନେ ହେଲା ମୋର ଐକାନ୍ତିକ ବ୍ରତ ଭାଙ୍ଗିଗଲା କି ଆଉ ! ମୁଁ କାହିଁକି ଆଜି ଦୁଇଟା ଅନୁଭବ କରୁଛି ?

ପୁଣି ସେହି ନିଛାଟ ସ୍ମୃତିକି ଚାହିଁ । ସେ କହେ—ନା' ତମେ ଦୁହେଁ ଏକ । ସେ ମୋର ଦେହ ଛୁଇଁଛି ସତ କିନ୍ତୁ ସେ ରୋମାଞ୍ଚନ, ସେ ଅନୁଭୂତି ମୋର ନୁହେଁ, ତାର; ତା'ର ଦାଆ ।

ମନହୁଏ, ତାର ଅଧର ପାଖକୁ ଅଧର ନିଅନ୍ତି ! ଏକାନ୍ତରେ ଏକ ହେଇଯିବାର ଲାଳସାରେ । ନେବ ? ସତ୍ୟକୁ ସତ୍ୟ ରୂପରେ ପ୍ରକୃତ ରୂପରେ ଦେଖିବ ?—ଥରେ ଦେଖିବ ।

କିନ୍ତୁ ଅନୁମତି ମିଳେ ନାହିଁ । ଆପଣାର ମନ ଆପଣାର କଳ୍ପନା ଅବାଧ ହୁଏ । ସେଇଠି ପୁଣି ନିଜକୁ ଚାହିଁ ଦେଖେ—ଦୁଇ ହୋଇଗଲା ।

ଭଲ ନପାଇବାଟା ତେବେ ଏକ । ଭଲ ପାଇବାଟା ଦୁଇ । 'ଆଉ ଭଲ ପାଇ ନିଜର ଭଲ ପାଇବା ବଦଳରେ ଅନ୍ୟ ଜଣକର ଭଲ ପାଇବାଟାକୁ ପାଇବା ଅର୍ଥ ପୁଣି ଏକ ହେଇଯିବା ।

ପୁଣି ସେଇ ପ୍ରଶ୍ନ—ସେ ମୋତେ ଭଲ ପାଇପାରିବ ! ପ୍ରକୃତ ଭଲ ପାଇ ପାରିବା ହେଲ ପାରିବ ! ଯେଉଁ ଭଲ ପାଇବାରେ ଭଲ

ପାଇବାର ଯାହା ନଗ୍ନରୂପ ତାହା ଏକାବେଳକେ ଢ଼ାଙ୍କି ହୋଇ-ପଡ଼ିଲ । ତାର ଆଉ ଗୋଟାଏ ସତ୍ୟରୂପ ଅଛି ବୋଲି ଯିମିତି ଆଦୌ ବୁଝା ନପଡ଼େ ।

ତେବେ ଏଇ ଅସତ୍ୟ ଭଲ ପାଇବାଟା ପୁଣ୍ୟ ନା ପାପ ! ଭିତରର ଲାଳସାକୁ ଘୋଡ଼ାଇ ରଖି ଉପରେ ତାକୁ ଏମିତି ଗୋଟେ ପୁଣ୍ୟରୂପ ଦେବା ନ୍ୟାୟ ନା ଅନ୍ୟାୟ ।

ପାଣି ଶକ୍ତ ହେଲେ ବରଫ ହୁଏ—ପାଣି ରହେନାହିଁ । ଭଲ ପାଇବା ସେମିତି ସବୁଦିନେ ଭଲ ପାଇବା ଛଡ଼ା ଆଉ କିଛି ହୋଇ ନପାରେ । ସେ ପାପ ହୋଇଥିଲେ ପାପ, ପୁଣ୍ୟ ହୋଇଥିଲେ ପୁଣ୍ୟ। ଏତିକ କୁହାଯାଇ ପାରେ ।

ଏଇ ନିସ୍ତବ୍ଧ ରାତି । ନିଜକୁ ନିଜେ ମୁଁ ଦେଖୁଛି—ପଚାରୁଛି— ।

ଏଇ ନିସ୍ତବ୍ଧ ରାତି—ସେଠି ସେ ଅଛି ମୋତେ ଦୁଃଖର ଅନୁଭୂତି ଦେବାପାଇଁ ।

ସେଇ ନିସ୍ତବ୍ଧ ରାତିରେ ଆମେ ଦହେଁ ଛଡ଼ାଛଡ଼ି ହୋଇଯିବୁ । ସେ ମୋତେ ଯିମିତି ଭାବରେ ପାଇବାକୁ ଆଶା କରୁଛି ମୁଁ ତା' ଆଗରେ ଠିକ୍ ସେମିତି ହୋଇ ପାରୁନାହିଁ । ମୁଁ ତାକୁ ଯେମିତି ପାଇବାକୁ ଆଶା କରୁଛି ସେଟା ତା' ପକ୍ଷରେ ଅନ୍ୟାୟ ଅଧର୍ମ ।

ମନେହୁଏ ସେ ମୋତେ ବୁଝେଇ କହୁଛି—ଧନ୍ୟରେ କଳ୍ପନା, ଏଇ ନିସ୍ତବ୍ଧ ରାତି ପରି ଗୋଟାଏ ନୁହେଁ—ଭଲ ପାଇବାର କେତେକଟା ନ୍ୟାୟ ଆଉ କେତେକଟା ଅନ୍ୟାୟ ।

କିନ୍ତୁ ମୁଁ ତାର ସୀମା ଠିକ୍ କରି ପାରୁନାହିଁ । ମୋର ସେଇଠି ହେଉଚି ଭୁଲ । ମୁଁ ସେଥିପାଇଁ ଧରି ନେଉଛି, ଭଲ ପାଇବାଟା

ଅନ୍ୟାୟ । ନିସ୍ତବ୍ଧ ରାତ ନିର୍ବାକ । ତାର ସେଇ ନିସ୍ତବ୍ଧିଆ ନଭାଙ୍ଗିବା ଯାଏ ସେ ସେଇ ନିସ୍ତବ୍ଧ ହୋଇ ରହିବ । ଭଲ ପାଇବା—ଅନ୍ୟାୟ ଭଲ ପାଇବା ଅନ୍ୟାୟ ଅଧର୍ମ ହୋଇ ରହିଥିବ ।

ଏଇ ନିସ୍ତବ୍ଧ ରାତକୁ ମୋତେ ଛାଡ଼ଦେବାକୁ ହେବ ନା—ନିସ୍ତବ୍ଧ ରାତ ମୋତେ ଛାଡ଼ି ଚାଲିଯିବ ! ମୁଁ ଏଇ ଛାତି ଉପରେ ତାର ଅତ୍ୟାଚାର ସହିବି । ସେଇ ମୋର ଭାଗ୍ୟ ।

ଖାଲି ଗୋଟିଏ କଥା ଭାବୁଛି । ରାତି ଯାଉଚି—ସମସ୍ତେ ଯାଉଛନ୍ତି । ନ୍ୟାୟ ହେଉ ଅନ୍ୟାୟ ହେଉ ସେହି ବୋଝକୁ ତ ସମସ୍ତେ ଭାର କରି ବହି ନେଉଚନ୍ତି ।

ସମସ୍ତେ ଚାଲିଗଲେ । ମୁଁ ରହିଗଲି ଏକୁଟିଆ । ପାପକୁ ଡରି ମୁଁ ଗଲି ନାହିଁ । ପାପ ମୋତେ ଏକୁଟିଆ ପାଇ ଆଜି ମାଡ଼ି ବସୁଛି । ମୁଁ କ'ଣ କରିବି ? ମୁଁ ବୁଡ଼ିଗଲି—ଭାସିଗଲି । ମୋ ପ୍ରତି କାହାର ହେଲେ ଦୟା ନାହିଁ । ମୋ ପାଇଁ କେହି ହେଲେ ସାହସ କରି ଅଧର୍ମ କରିବ ନାହିଁ ! ତାହେଲେ ମୋତେ କେହି ଭଲ ପାଇବନାହିଁ ।

ଆଉ ମୁଁ ?—ଏଇ ନିସ୍ତବ୍ଧ ରାତରେ ମୁଁ କେବଳ ମୁଁ—ନିସ୍ତବ୍ଧ ।

କଲ୍ପନା ଲିଭିଗଲା ।

## ତା'ପରେ

ସମନ୍ତଙ୍କ ଜୀବନରେ ଘଟେ ଘଟୁଛି ଓ ଘଟିବ । ମୋର ଆଉ ନୂଆ କଥା କ'ଣ ! ଯେ ନମାନେ ସେ ମିଛ କଥା କହେ ।

ଯୌବନର ପ୍ରଥମ ଝଲସରେ ମଣିଷ ଯେତେବେଳେ ଗୋଟାଏ ଅଭୂତପୂର୍ବ ଚେତନା ପାଏ ସେତେବେଳେ ସେ ଗୃହେଁ, ଦୁନିଆଟା ଯାକର ସବୁ ସୌନ୍ଦର୍ଯ୍ୟକୁ ଶପୂଡ଼ି ତା'ର ରସଟାକୁ ମନ୍ତୁଆଳ ହୋଇ ପିଇଯିବାପାଇଁ । ରସାଳ ପଦାର୍ଥକୁ ସେ ଗିଳଦେବାକୁ ଭଯ୍ କରେ ନାହିଁ । ପଣସ ପର ଯେତେ କଣ୍ଟା ଥାଉ, ନଡ଼ିଆ ପର ଯେତେ ଟାଣ ଥାଉ, ସେ ଅଡୁଆ ଅସୁବିଧାତକ ତାକୁ ବରଂ ଭଲ ଲାଗେ । କିନ୍ତୁ ଏ ଉତ୍ସାହଟା ସବୁଦିନେ ରହିପାରେ ନାହିଁ ।

କମଳାକୁ ଦେଖି ମୁଁ ଭଲ ପାଇଲି । ତମେ କହ ତାକୁ ଭଲ ପାଇବା । ମୁଁ ବି ସେଦିନ ତମର ଭାଷାରେ ତାକୁ ଭଲ ପାଇବା ବୋଲି କହୁଥିଲି । କିନ୍ତୁ ଆଜି ମୋର ମନ ହଉଚି ତାର ଆଉ ଗୋଟାଏ କିଛି ନାମ ଦେବାକୁ । ସେ ଭାଷାଟା ଖୋଜି ପାଉନାହିଁ । ପାଗଳାମି ନୁହେଁ । ତେବେ ପାଗଳାମି ବୋଲି କହୁଥାଏ ।

ସେ କିମିତିକା ପାଗଳାମି ଜାଣନ୍ତି । କମଳା ବାହା ହୋଇ ଯାଉଥିବା ଦିନ ଯେଉଁ ପାଗଳାମି ମୁଣ୍ଡରେ ପୂରେଇ ମୁଁ ବିଷ ଖାଇ ଦେବାକୁ ଯାଉଥିଲି, ସେ କାଳର ଭଲ ପାଇବାଟା ସେଇମିତିକା ଧରଣର ଗୋଟିଏ ପାଗଳାମି । ଯେତେବେଳେ ସେ ଧରେ, ଗୋଟି ପ୍ରେତ୍ନୀ ଭୂତ ମାଡିବସିଲା ପରି ମାଡ଼ି ବସେ । କିନ୍ତୁ ସେ ବେଶୀ ବେଳ ରହେ ନାହିଁ । ଛାଡିଯାଏ । ଛାତି ଭିତରୁ ସବୁ ଅଳିଆ ଅସନାତକ

ଲିପି ପୋଛି ମନ ତାର ନିର୍ମଳ ନିର୍ବୋଳ ହୋଇ ବସିଯାଏ । କିଛି ନଜାଣିଲା ପରି ।

ମୁଁ କୁନ୍ତଳାକୁ ବାହା ହବାଦିନ ମୋର ସେ ସବୁ କିଛି ମନେ ନଥିଲା । କୁନ୍ତଳାକୁ ମୁଁ ବାହା ହୋଇଥିଲି ଆଖିରେ ଅନ୍ଧପଟଳୀ ବାନ୍ଧି ପ୍ରେମ କରି ନୁହେଁ । ବାହା ହେବାପାଇଁ ବାହା ହେଲି । ସମସ୍ତେ ବାହା ହେଉଛନ୍ତି ବୋଲି ବାହା ହେଲି । ବରଂ ବାପ ମା ବାହା କରେଇ ଦେଲେ ବୋଲି ବାହା ହେଲି । ବାହା ହୋଇ ଭଲ ପାଇବାକୁ ହେବ କିମ୍ବା ବାହା ଘରେ ପ୍ରେମ ନାଟକର ଶେଷ ପଟ୍ଟକ୍ଷେପ ହେବ, ଏ ସବୁକଥା ଭାବି ନଥିଲି ।

କୁନ୍ତଳା ସୁନ୍ଦର ଥିଲା କି ଅସୁନ୍ଦର ଥିଲା ମୋତେ ପଚାରିଲେ ମୋ କଥା ଖାଣ୍ଟି ସତ ହୋଇ ପାରିବ ନାହିଁ । ପୁଣି କେତେ ଲୋକ କେତେ ପ୍ରକାର କହନ୍ତି । କାହାରି ଜଣକ କଥାକୁ ସତ ବୋଲି ଧରିଲେ ଆଉ ଜଣକ କଥା ମିଛ ହୋଇଯାଏ । ତେବେ ତା' ଦେହରେ ଯାହା ଯାହା ସୁନ୍ଦର ବୋଲି ଭିନ୍ନ ଭିନ୍ନ ଲୋକେ ଭିନ୍ନ ଭିନ୍ନ ପ୍ରକାର କହିଥାନ୍ତି ସେ ସବୁକୁ ଗୋଟେଇ ଦେଲେ ସେ ଗୋଟିଏ ତିଲୋତ୍ତମା—କଉଁଠି ବାଛିବାକୁ ନାହିଁ । ପୁଣି ସେଇ ଲୋକେ ତାର ଯଉଁ ଯଉଁ ଅଂଶକୁ ବାଛି ଥାଆନ୍ତି ତାକୁ ଯୋଗ କରି ଦେଖିଲେ ଯୋଗଫଳ ଅନୁସାରେ ସେ ତାଡ଼କା ଅସୁରର ବଡ଼ ଭଉଣୀ । ତେଣୁ ତାର ରୂପ ଗୁଣ ବିଷୟରେ କିଛି ନ କହିବାଇ ଭଲ । କିନ୍ତୁ ସେ ଭଲ ହେଉ ମନ୍ଦ ହେଉ ଯାହା ହେଉ ମୋତେ ବେଶ୍ ଆରେଇ ଗଲା । ମୁଁ ଏକପ୍ରକାର ବାନ୍ଧି ହୋଇ ପଡ଼ିଥିଲି ତା' ଦେହରେ । ଗୋଟାଏ ଜିନିଷ ଭଲ ହଉ ମନ୍ଦ ହଉ ଆପଣାର ବୋଲି ମନେ ହେବା ପରଠୁଁ ମଣିଷ ଆଖି ଇମିତ ଅନ୍ଧ ହୋଇଯାଏ ସ୍ୱାର୍ଥରେ

ଯେ ସେ ଆଉ ଭଲ ମନ୍ଦ ବିଗ୍ଚାର କରି ବସିବାକୁ ଖିଅ ପାଏ ନାହିଁ । ପ୍ରଥମେ ପ୍ରଥମେ ବୋଧହୁଏ ତୁଳନା କରେ । କିନ୍ତୁ ବି ପୁଣି ମନରେ । ମନର ଅବଶୋଷରେ । କିନ୍ତୁ ସେଇଟା କ୍ଷଣସ୍ଥାୟୀ । ମଣିଷ ଆପଣାର ନାକଟା ଆଖିଟା ଅସୁନ୍ଦର ହେଲେ ଯିମିତି ଅନ୍ୟ ଲୋକର ସୁନ୍ଦର ଆଖି ନାକ ଦେଖି ନିଜ ଆଖି ନାକକୁ କାଟି ଫିଙ୍ଗିଦେଇ ପାରେ ନାହିଁ ସେମିତି ଗୋଟାଏ ଆପଣାର ଭାବ ସାଙ୍ଗରେ ଠିକ୍ ଏ ଠିକ୍ ଏ ନିରୁପାୟ ଭାବ ବି ଆସେ ।

କୁନ୍ତଳା ସାଙ୍ଗରେ ମୋର ଦିନଗୁଡ଼ାକ ବେଶ୍ କଟି ଯାଉଥିଲା । ମୋର ଦିନକ ପାଇଁ ମନରେ ଏ ଚିନ୍ତା ଆସିବାର ଡର ନଥିଲା ଯେ ମୁଁ ଅନ୍ୟ କୌଣସି ସ୍ତ୍ରୀ ପାଇଥିଲେ ଅଧିକ ସୁଖୀ ହେଇଥାନ୍ତି । କିନ୍ତୁ ମୋର ଡର ହେଲା ଆଉ ଗୋଟାଏ ଦିଗରୁ । ମନେ ହେଉ-ଥିଲା ବିଭାଘରର ପ୍ରଥମ କେଇଦିନର ଯଉଁ ନିଶା ସେ କ୍ରମେ କ୍ରମେ ଛାଡ଼ି ଆସୁଛି ।

ଲଳିତାକୁ ମୁଁ ପ୍ରଥମେ ଯେଉଁଦିନ ଦେଖିଲି ସେଦିନ ମୋର ଯାହା ହେଲା ତାକୁ ଦୟା ବୋଲି କୁହାଯାଇ ପାରେ । ଦୟାର ପରିଣତି ଯାହା ହେଲା ସେଇଟାକୁ ମୁଁ କ'ଣ କହିବି ? କିନ୍ତୁ ଦୟାରୁ ପ୍ରେମ ଆସେ ନାହିଁ ଏକଥା ମୁଁ ନିଶ୍ଚୟ କହିବି । ଅନେକ ସମୟରେ ପ୍ରେମଟାଇ ଦୟାର ଛଦ୍ମବେଶ ଧରି ଆସେ । ମଣିଷ ଯଉଁ ଦୁର୍ବଳ ମୁହୂର୍ତ୍ତିରେ ଯାହା ନିଜର ଅଛି ତାକୁ ଛାଡ଼ି ଯାହା ନାହିଁ, ଯାହା ନିଜର ନୁହେଁ ତା ଆଡ଼କୁ ଆଖି ପକାଏ ସେତିକିବେଳେ ପ୍ରେମ ବା ପାଇବାର ଲାଳସା ତାର ନିଜର ରୂପ ଦେଖାଏ । ମୋର ସେଇୟା ହେଲା ।

ଲଳିତା ବିଧବା । ବାଲ ବିଧବା ହୋଇଥାଇ ପାରେ । କିନ୍ତୁ ସେ କଥା ମୁଁ ତାକୁ କେବେହେଲେ ପଚାରି ନାହିଁ । ହୃଦୟ ଯେଉଁଠି ପୂର୍ଣ୍ଣ ଥାଏ ସେଠି ପ୍ରଶ୍ନ ଉଠେ ନାହିଁ । ଲଳିତାର ଗୁଲି ଚଳନ କଥା ବାର୍ତ୍ତା ସ୍ୱଭାବ ଚରିତ୍ର ମୋତେ ଗୋଟିମଟେ ବୁଡ଼ାଇ ପକାଉ-ଥିଲା ଯେମିତି ।

ଆଗରେ ପଥର ବାଡ଼ ଆକାଶ ଉହଁର—ଲୋକ ନିନ୍ଦା । ସେଇଥିପା ଲାଗିଲା ଖେଲଘର ପରି । ଘରର ସୁଖଶଯ୍ୟା ଛାଡ଼ି ପଡ଼ିଲି ଝାଟା କମ୍ପାନୀର କାରଖାନା ଭିତରେ—ହାଡ଼ଭଙ୍ଗା ଖଟଣୀ ଖଟିବାକୁ । ପହିଲେ କେତେଦିନ ବଡ଼ ଭଲ ଲାଗିଲା । ଲଳିତାର ବେଶ ସଜାଉ-ବାରେ ଖରଚ କରିବା ଥିଲା ମୋର ସବୁଠୁଁ ବଡ଼ ଆନନ୍ଦ । ଲଳିତାର ସେ ବିଧବା ବେଶ ଲୁଚି ଯାଇଛି ଦେଖିଲେ ମୋ ମନ ଭିତରେ ବରଂ ଗୋଟାଏ ଗର୍ବ ହୁଏ ।

ସେତେବେଳେ ମୁଁ ଭାବି ନଥିଲି ଯେ ହଠାତ୍ ଦୁଃସମୟ ଆସିବ । କଲ ଘରକୁ ପ୍ରତିଦିନ ଯାଏ । ଖଟିବା ସଙ୍କଟରେ ନୁହେଁ । ଲଳିତାର ପ୍ରେମ ନିଶାରେ କହିଲେ ଚଳିବ । କିନ୍ତୁ କଲ ଯେ ପ୍ରତିଦିନ ମୋର ବଳ ବୟସ ଖାଇ ଯାଉଛି ଖୁବ୍ ଗୁପ୍ତେ ଗୁପ୍ତେ ସେ କଥା ମୁଁ ବୁଝି ପାରି ନଥିଲି । ଥରେ ଭୀଷଣ ବେମାର ପଡ଼ି ଘରେ ବସି ରହିଲି । ଟଙ୍କା ପଇସାର ବଡ଼ ଅଭାବ । ଲଳିତାକୁ ଦେଖି ମୋର ଭାରି କଷ୍ଟ ହେଲା । ପଇସା ନାହିଁ । ଖଟିବାକୁ ବଳ ନାହିଁ । ଲଳିତାକୁ ସାଙ୍ଗରେ ଆଣି ଠିକ୍ କରିଛି କି ନକରିଛି ସେ କଥା ଭାବୁ ନଥିଲି । ଭାବୁଥିଲି, ତାକୁ ସାଙ୍ଗରେ ରଖି ବୋଧହୁଏ ଠିକ୍ କରୁନାହିଁ । ଲଳିତାକୁ ଆଣିଥିଲି ମୁଁ କାହିଁକି ? ଲଳିତାକୁ ମୁଁ ଯେଉଁଥିପାଇଁ ଆଣିଥିଲି ସେ ଯାହା ଆଜି ବି ମୋତେ ସେଇଥିପା ଦାବି କରେ ତାର

ଅନ୍ୟାୟ ହେବ କି । ମୁଁ ଲଳିତାଙ୍କୁ ଦୋଷ ଦେବି କାହିଁକି ? ସେ ଯଦି ମୋର ଅବସ୍ଥା ସାଙ୍ଗରେ ଆପଣାକୁ ବ୍ୟବସ୍ଥିତ କରି ନପାରେ ତେବେ ତାର କି ଅପରାଧ ! ବରଂ ତାକୁ ପ୍ରଶଂସା କରିବି ଯେ ସେ ତଥାପି ମୋତେ ଛାଡ଼ି ଚାଲିଯାଇ ନାହିଁ ।

ସମସ୍ତେ ମୋର ପୌରୁଷକୁ ନିନ୍ଦା କରନ୍ତୁ ପଛେ ମୁଁଇ ତାକୁ ଛାଡ଼ିଗଲି—ସେ ମୋତେ ଛାଡ଼ି ନଥିଲା । ମୋତେ ଏଡ଼େ ହୀନ ଅବସ୍ଥାରେ ତା' ପାଖରେ ରହିବାକୁ ନିତାନ୍ତ ଅମର୍ଯ୍ୟାଦା ଅପମାନ ବୋଧ ହେଉଥିଲା । ମୁଁ ସେ ପରିସ୍ଥିତି ସହ୍ୟ କରିପାରୁ ନଥିଲି ।

ତା'ପରେ—

ଜାଣେ ନାହିଁ ଆଉ କେତେଦିନ ବଞ୍ଚିବି । କିନ୍ତୁ ବଞ୍ଚିଛି । ଜୀବିକା ବି ଅର୍ଜନ କରୁଛି । ଏଇ ଗଛ ମୂଳରେ ବସି ବହୁ ଲୋକଙ୍କର ଭାଗ୍ୟ ରେଖା ଗଣେ । ଏଟା ଭଣ୍ଡାମି ହୋଇପାରେ । କିନ୍ତୁ ଲୋକେ ସେକଥା ଜାଣି ଶୁଣି ପଚାରନ୍ତି—'ତା ପରେ—'

ସେଇ 'ତାପରେ—'ର ଉତ୍ତର ମୁଁ ପାଏ ନାହିଁ ।

କମଳାର ହାତ ଦେଖିଲି । ମୁଁ କହିଲି, ମନେ ପଡ଼େ ପିଲାଦିନର ଜଣେ ଖୁବ୍ ସାଙ୍ଗକୁ ତମର ।

ସେ କହିଲା—'ନା—ତାପରେ—'

ମୋ ଛାତିରେ ବଡ଼ ଆଘାତ ଲାଗିଥିଲା ।

କୁନ୍ତଳା ଆସିଥିଲା । ଦାଢ଼ୀ ଭିତରେ ମୋତେ ଚିହ୍ନିବାର ଉପାୟ ନାହିଁ । ମୁଁ ତାକୁ କହିଲି, ସ୍ୱାମୀ ତୋର ତୋତେ ଛାଡ଼ି ଦେଇ ଚାଲି ଯାଇଛନ୍ତି । ସେ ଆଉ ଫେରିବେ ନାହିଁ । ସେ କାନ୍ଦିଲା ।

ମୁଁ ନିଜ ଆଖିର ଲୁହକୁ ନିଜ ଭିତରେ ଟୋକି ନେଉଥିଲି । ମୋର ମନେ ହେଲା, କୁନ୍ତଳାର ସ୍ୱାମୀ ହେବାକୁ ମୁଁ ଅଯୋଗ୍ୟ । କୁନ୍ତଳା ଏକାକୀ ଫେରିଗଲା ।

ଶେଷରେ ଆସିଲା ଲଳିତା । ମୁଁ ତାକୁ କହିଲି—'ତମକୁ ଯେ ରାଣୀ କରି ରଖିଥିଲା ସେ ତମର ଦୁଃଖ ସହି ନପାରି ଚାଲିଯାଇଛି । କି ତ୍ୟାଗ ସେ ନକରିଛି ତମ ପାଇଁ ?'

"ମୁଁ କ'ଣ ତା ପାଇଁ କିଛି ତ୍ୟାଗ କରିନାହିଁ ?" ସେ ଉତ୍ତର ଦେଲା ।

ତାପରେ—?

# ଅନ୍ଧ

ଅନ୍ଧଟିଏ । ତାର ଆଉ କେହି ନାହିଁ । ଏତିକି ବକଟେନାକୁ ଛୁଆ । ସେଇ ଏକା ତାର ସାହା । ବାଡି ଖଣ୍ଡେ ଧରି ସେଇ ଅନ୍ଧକୁ ବାଟ କଢ଼େଇ ନେଇଯାଏ । ଅନ୍ଧ ଗୀତ ଗାଏ, ଭିକ ମାଗେ । ଝିଅଟି ତାର ଝୁଲି ପତାଇଦିଏ । ସଞ୍ଜବେଳକୁ ଦୁହେଁ ଫେରି ଆସନ୍ତି ଖଣ୍ଡିଏ ଭୁଙ୍ଗା ପଲା ତଳକୁ ।

ଅନ୍ଧ ଭାତ ରାନ୍ଧି ବସେ । ଝିଅ ଦିଏ ଚୁଲିକି ଜାଳ ଫେଲି । ଅନ୍ଧ କଥା କହେ, ସେ ହୁଁ ଭରେ । ବେଳେ ବେଳେ ଛୁଆଟା ଢୁଲେଇ ପଡ଼େ । ଅନ୍ଧ ଡାକେ ଝିଅ ! ଝିଅ ଚମକି ପଡ଼େ ।

ପାଣି ଆଣି ଯାଇ ଝିଅ ଦିନେ ଦିନେ କେତେ ଡେରି କରି-ଦିଏ । ଅନ୍ଧ ରାଗିଯାଏ । ଗାଳି ଦିଏ—ହଁ ଲୋ ତୁ ମୋତେ ଡରିବୁ କିଆଁ । ଅନ୍ଧ ବାପୁଡ଼ାଏ ତ ! ଭାବୁଥିବୁ, ଏ ମଲେ ମୁଁ ନିଶ୍ଚିନ୍ତ । ଝିଅଟିର ଆଖିରେ ଲୁହ ଭରିଯାଏ । ବେଳେ ବେଳେ ବାପର ଭର୍ତ୍ସନା ସହ୍ୟ କରି ନପାରି କାନ୍ଦେ । ଅନ୍ଧ ସେ କାନ୍ଦଣା ଦେଖି ପାରେ ନାହିଁ । ସେ ଲୁହକୁ ପୋଛି ପାରେ ନାହିଁ ।

ଝିଅଟି ଗୋଟିପଣେ ତାର । ଏ ଦୁନିଆର ରାସ୍ତା, ଘାଟ, ଘର, ଦ୍ୱାର ନାଟ ତାମସା, ବାଜି ଖେଳ କାହାରି ଅଧିକାର ନାହିଁ ଝିଅ ଉପରେ । ଝିଅ ପାଖରେ ବସିଥିଲେ ତାର ମନେହୁଏ, ଦୁନିଆ ଅଛି, ଦୁନିଆବାସୀ ମଣିଷ ଭିତରେ ଦୟା ଅଛି, ଭଗବାନ ଅଛନ୍ତି । କିନ୍ତୁ ରାସ୍ତା ମଝିରେ ଥରେ ଥରେ ଅନ୍ଧକୁ ବସେଇ ଦେଇ ଅନ୍ଧ ଝିଅ

ଯେତେବେଳେ ଆପଣାର ସ୍ୱତନ୍ତ୍ର ସତ୍ତାକୁ ଅନୁଭବ କରିବାପାଇଁ ଅଳପ ଦୂରକୁ ଯାଇଁ ବୁଲି ବୁଲି ଦେଖୁଥାଏ, ସେତେବେଳେ ଅନ୍ଧ ମନେ କରେ ଦୁନିଆଟା ଅନ୍ଧ, ଦୁନିଆଟା ନିଷ୍ଠୁର, ଦୁନିଆଁରେ ମଣିଷ ନାହିଁ, ଦୁନିଆଯାକ ମଣିଷର ହୃଦୟ ନାହିଁ—ଭଗବାନ ନାହାନ୍ତି । ଝିଅକୁ ସେ ଗାଳିଦିଏ । କିନ୍ତୁ ପାଖରେ କିଛି ସମୟ ପାଇଲେ ସବୁ ରାଗ ଭୁଲି ହୋଇଯାଏ । ଦୁଃଖ କରେ—କାହିଁକି ରାଗିଲି ।

ଅନ୍ଧ ଥରେ ବେମାର ପଡ଼ିଲା, ଭାରି ବେମାର୍ । ଆଉ ଭିକ ମାଗି ଯାଇ ପାରେନାହିଁ । ଝିଅକୁ ଛାଡ଼ିଦିଏ ଭିକ ଗଣ୍ଡାଏ ଆଣିବାପାଇଁ । ଛୁଡ଼ା ମଶିଣା ଖଣ୍ଡିକ ଉପରେ ପଡ଼ି ଅନେଇଥାଏ ତା ବାଟକୁ । ଭାବେ, ଆସିଲେ ସେ କଥା କହିବ ତା ଆଗରେ । କିନ୍ତୁ ଝିଅ ଯେତେବେଳେ ଫେରେ ସେ ଦେଖେ ଯେ ତାର କହିବାକୁ କିଛି ନାହିଁ । ଓଲଟି ଝିଅଟି ଗୁଳୁରୁ ଗୁଳୁରୁ ହୋଇ ତାର ସେଦିନିକାର ଅଭିଜ୍ଞତା କହେ । କଉ ବାବୁ ମାଇଲା, କିଏ ଗାଳିଦେଲା, କା ମାଇପ କାମୁଡ଼ି ଗୋଡ଼େଇ ଆଣିଲା ଆଉ କିଏ ପଇସାଟିଏ ମାଗିଲାରୁ ଅଣିଟିଏ ଦେଲା, ଗୋଟି ଗୋଟି କରି ବାପ ଆଗରେ କହେ । ବାପ ଶୁଣେ । ମନେହୁଏ ଗୋଟାଏ ଦୁନିଆର ଇତିହାସ ଏ ।

କିନ୍ତୁ ଝିଅ ଆଉ କେତେ ମାଗିବ । ଦୁଇଜଣ ଜଣଙ୍କ ମାଗି-ଅଣାରେ କେତେଦିନ ଚଳିବେ । ବାପର ସାଗୁ ବାଲି କିଣି ଆଣି ସାରି ଦେଖେ ଯେ ତାର ଖାଇବାକୁ ନାହିଁ । କ୍ରମେ କ୍ରମେ ସେ ଭାଙ୍ଗି ପଡ଼ିଲା । ଭୋକରେ ଦିନେ ଦିନେ ତାର ପେଟ ଆଉଟି ହୋଉ-ଥାଏ, ସେଇଥିରେ ସେ ଯାଏ ଭିକ ମାଗି । ବଡ଼ କଷ୍ଟ । ସେ ଆଉ ସହି ପାରେନାହିଁ ।

ଦିନେ ଭାରି ଭୋକ ଲାଗୁଥିଲା । ଦୁର୍ବଳ ଗୋଡ ଆଉ ଚାଲି ପାରୁ ନଥିଲା । ସେ ନଥ କରି ବସି ପଡ଼ିଲା ରାସ୍ତା କଡରେ ।

ଲୋକଟିଏ ଆସି ପଚାରିଲା—ଆମ ଘରକୁ ଯିବୁ—ଖାଇବାକୁ ଦେବା । ସେ କହି ନ ବାରୁର ସାଙ୍ଗେ ସାଙ୍ଗେ ଉଠିଲା । ଭୋକ ଆତୁରାରେ ସେ ସବୁ ଭୁଲି ଯାଇଥିଲା—

ସେ କହେ—ମୁଁ ବାପା ପାଖକୁ ଯିବ ।

ଲୋକଟି କହେ—ସେଠିକି ଗଲେ ଉପାସରେ ମରିବୁ ।

ସେ କହେ—ମୋ ବାପା ।

ଲୋକଟି କହେ—ବାପ ବାପ ହବୁ ତ ତଣ୍ଟି ଚପିଦେବା ।

ସେ ଏଣେ ବାପ ବାପ ହୋଇ କାନ୍ଦୁଥିଲା । ଫିଟିକରି ଯିବାର ଉପାୟ ନଥିଲା । ଆଉ ତା' ବାପ ।

ସବୁଦିନ ପରି ଅନ୍ଧ ସେଦିନ ବି ଗୁହାଁଳା—ଝିଅ ଆଉ ଫେରିଲା ନାହିଁ । ଦିନେ ଗଲା ଦୁଇଦିନ ଗଲା । ଝିଅର ଦେଖା ନାହିଁ । ଅନ୍ଧ ଘୁସୁରି ଘୁସୁରି ଯାଇ ରାସ୍ତା କଡ଼ରେ ବସି ଡ଼ାକିଲା—ବାବୁ ଗୋଟିଏ ପଇସା ।

ଡାକ ଦିଏ—ତେଣେ କାନପାରେ, ଝିଅ ପାଟି ଶୁଭିଲା କି ।

କିନ୍ତୁ ଝିଅ କାହିଁ ।

ବର୍ଷା ଆସେ, ଝଡ଼ ଆସେ, ବିଜୁଳି ମାରେ, ଘଡ଼ଘଡ଼ି ଫାଟି ପଡ଼େ, ଅନ୍ଧ କାନ୍ଦେ, ତା' ଛାତି ଫାଟିଯାଉଚି ପରି କି । ସାତପାଙ୍କ ପଲା ଭିତରେ ପଡ଼ି ଅନ୍ଧ ଅନ୍ଧାରର ଅନ୍ଧାର ଭିତରେ କ'ଣ ଖୋଜେ, କାହାକୁ ଚାହୁଁଥାଏ କିଜାଣି ।

ସେ ଏବେ ବି ବଞ୍ଚିଛି, ଖାଲି ଏଇ ଦୁଃଖର ଅନୁଭୂତି—ହୃଦୟର ପରାପଟିକୁ ଆଉ କାହାକୁ ଦେଇ ପାରୁନାହିଁ ବୋଲି ।

ଝିଅ ଭୁଲିଗଲା । ଯୌବନ ତାକୁ ଭୁଲେଇ ଦେଲା । କିନ୍ତୁ ଅନ୍ଧ ?

# ନିର୍ବାଣ

କେଉଁ ବିସ୍ମୃତ ଅତୀତର କଥା ।

ବୌଦ୍ଧଯୁଗ ।

ନିବିଡ଼ ଅରଣ୍ୟାନୀ ।

ଆଜାନୁ ଲମ୍ବିତ ବାହୁ । ଆକର୍ଣ୍ଣ ବିସ୍ତାରି ଭ୍ରୂ । ଆକଣ୍ଠ ଶୋଭିତ କଣ୍ଠ । ସୁଦୀର୍ଘ ଲଲାଟ । ସୁଗୋଲ ମୁଖମଣ୍ଡଳ । ସୁକାନ୍ତ ସୁଗଠ ଅଙ୍ଗ ଯଷ୍ଟି । ଜଣେ ଆର୍ଯ୍ୟ ଯୁବକ । ଭିକ୍ଷୁ । ତପସ୍ୟାବ୍ରତ ସାଧକ ।

* * * *

ଊଷାଗମର ଅବ୍ୟବହିତ ପୂର୍ବରୁ, ତମସାବୃତ ରଜନୀର ବୁକୁ ବିଦାରଣ କରି ଯେତେବେଳେ ପ୍ରକାଶର କ୍ଷୀଣତମ ଆଭାସ ବାୟୁମଣ୍ଡଳକୁ ପୁଲକିତ କରେ, ସେତେବେଳେ ଗୋଟାଏ ଅତି ପରିଚିତ ଶର ପ୍ରତ୍ୟାଶିତ କାକଳିର ସ୍ପନ୍ଦନରେ ରମ୍ୟ ଉଲ୍ଲସିତ ହୋଇ ଆସେ ।

ସେ କାକଳି କମ୍ପନ ବ୍ୟତିରେକେ ତମସା ଯେପରି ବିଦୂରିତ ହେବାର ନୁହେଁ, ସୁସୁପ୍ତି ଯେପରି ଅପସାରିତ ହୁଅନ୍ତା ନାହିଁ । ଶରୀର ସ୍ଥାଣୁ ଅକର୍ମଠ, ସମସ୍ତ ସୃଷ୍ଟି ଯେପରି ଜଡ଼ ଅଚେତନ ହୋଇ ପଡ଼ି ରହନ୍ତା ।

* * * *

ନିତ୍ୟକର୍ମ ସମାପନାନ୍ତେ ସାମାନ୍ୟ ଫଳାହାର କରି ଭିକ୍ଷୁ ଯେତେବେଳେ ବଳିଷ୍ଠ ବୋଧି ବୃକ୍ଷ ତଳେ ଭିକ୍ଷୁ ମୁଦ୍ରା କରି ସିଦ୍ଧ ଆସନରେ ବସି ଧ୍ୟାନ ମଗ୍ନ, ସେତେବେଳେ ପ୍ରତିଦିନ, ବାଳିକାଟିଏ ଆସି ତାଙ୍କୁ ପ୍ରଣିପାତ କରେ—

"ବୁଦ୍ଧଂ ଶରଣଂ ଗଚ୍ଛାମି
ସଂଘଂ ଶରଣଂ ଗଚ୍ଛାମି
ସତ୍ୟଂ ଶରଣଂ ଗଚ୍ଛାମି !"

ତାପରେ ସେଇ ପାର୍ବତୀୟ ପ୍ରଦେଶରେ ଗୋଟାଏ ଅନୁତ୍ତର ପ୍ରହେଳିକା ଭଳି ଅନ୍ତର୍ହିତ ହୋଇଯାଏ ।

ସନ୍ଧ୍ୟା ଆସେ । ସୂର୍ଯ୍ୟ ଅସ୍ତାଚଳ-ଗାମୀ ହୁଅନ୍ତି । ସାକ୍ଷାତ୍ କରୁଣା ସଦୃଶା ସେଇ ତରୁଣୀ ପୁଣି ଆବିର୍ଭୂତ ହୁଏ । ପ୍ରଣାମ କରି କହେ—

ହିଂସା ବହୁଦୂର ହେଉ
କାମନା ବହୁଦୂର ହେଉ
ଦୁଃଖ ବିନଷ୍ଟ ହେଉ

ଧ୍ୟାନରତ ସନ୍ନ୍ୟାସୀ ଧୀରେ ଧୀରେ ସଚେତନ ହୁଅନ୍ତି । ଅର୍ଦ୍ଧ ଅବଗୁଣ୍ଠନବତୀ କୁମାରୀ ସନ୍ଧ୍ୟାରେ ଆଲୋକବତ୍ ଘନ ଘନ ଲତାର ଅନ୍ତରାଳରେ ଅନ୍ତର୍ହିତ ହୋଇଯାଏ ।

   

ପ୍ରତିଦିନ—ସକାଳ ଓ ସନ୍ଧ୍ୟା ।
ପ୍ରଭାତରେ ସେଇ ମଧୁର ସ୍ୱର—
ସନ୍ଧ୍ୟାରେ ସେଇ ସ୍ୱସ୍ତି ବଚନ—

ଧୀରେ ଧୀରେ ସେ ସବୁ ମୂର୍ତ୍ତିମୟ ହୋଇ ଉଠିଲା । କୁମାରୀର ଅନୁପସ୍ଥିତରେ ମଧ୍ୟ ଭିକ୍ଷୁ ଶୁଣନ୍ତି—ବୁଦ୍ଧଂ ଶରଣଂ ଗଚ୍ଛାମି ।



ଏହି ଧାରାବାହିକତାକୁ ଭଗ୍ନ କରି ସେଦିନ ଅକସ୍ମାତ୍ ଉପସ୍ଥିତ ହୋଇଥିଲେ ଜଣେ ରାଜକୁମାର । ସନ୍ନ୍ୟାସୀ ସଦ୍ୟ ଧ୍ୟାନ ରତ । କୁମାରୀ ପ୍ରଣିପାତ କରି ଫେରି ଚାହିଁଲା—ଅପୂର୍ବ, ଅନାହୂତ, ଅପ୍ରତ୍ୟାଶିତ, ଅଦୃଷ୍ଟପୂର୍ବ, ଆଗନ୍ତୁକ—ରାଜକୁମାର !

କି ସୁନ୍ଦର, କି ମନୋହର, କି କାନ୍ତି, କି ଲାବଣ୍ୟ ! ଉଦୀୟମାନ ସୂର୍ଯ୍ୟର ସମ୍ମୁଖରେ କୁମାରୀ ଲଜ୍ଜାବତୀ ଲତା ସଦୃଶ ସଙ୍କୁଚିତ ହୋଇ ପଡ଼ୁଥିଲା ।



ପ୍ରତିଦିନ, ସେଇଠି ସେହି ସ୍ଥଳରେ, ସନ୍ନ୍ୟାସୀ ଧ୍ୟାନରତ ହୋଇ ଯାଆନ୍ତି । କୁମାରୀ ଫେରି ଚାହେଁ—ଅଦୂରରେ ରାଜକୁମାର !

ଦିନ ପରେ ଦିନ ଚାଲିଥାଏ । କୁମାରୀ ଅଧୀର ହୋଇ ଉଠେ । କଣ୍ଠରେ କର୍କଶତା, ବ୍ୟସ୍ତତା, ଅସ୍ଥିରତା । ସନ୍ନ୍ୟାସୀଙ୍କ ଧ୍ୟାନମଗ୍ନ ହେବାରେ କଷ୍ଟ ହୁଏ । ଅଳ୍ପ ସମୟ ପରେ ଧ୍ୟାନ ଭଗ୍ନ ହୁଏ । ପାଖରେ କେହି ନଥାନ୍ତି ।

ଦୋଳାୟିତ ପତ୍ର ଛାୟାରେ ଏକ ବିକଟ ରୂପ ଦେଖାଯାଏ । ସନ୍ନ୍ୟାସୀ ଅନ୍ତରରେ ସନ୍ଦେହର ରାକ୍ଷସୀ ମୂର୍ତ୍ତି ସନ୍ଦର୍ଶନ କରି ସନ୍ତ୍ରସ୍ତ ହୋଇ ଉଠନ୍ତି ।

*   *   *   *

"ସଂଘଂ—ସ ଘଂ—ସଂଘଂ—ସଂଘଂ ଶରଣଂ ଗଚ୍ଛ
ବୁଦ୍ଧଂ ଶରଣଂ ଗଚ୍ଛ—
ଧର୍ମଂ ଧର୍ମ—ଧର୍ମଂ ।"

କୁମାରୀ ଫେର ପଡ଼ିଥିଲା । ସନ୍ନ୍ୟାସୀଙ୍କର ଲମ୍ବୁଯୋଗ ଭାଙ୍ଗିଲା । ସେ ଚକ୍ଷୁ ଉନ୍ମୋଚନ କରି ଚାହିଁଲେ—କିୟଦ୍ ଦୂରରେ ସମ୍ମୁଖରେ ଜଣେ ରାଜକୁମାର !

*   *   *   *

ଦିନପରେ ଦିନ ଚାଲିଯାଏ । ସନ୍ଧ୍ୟା ଆସେ । କୁମାରୀ ସନ୍ଧ୍ୟା-ପରେ ସନ୍ଧ୍ୟା ଆସି ସ୍ତୁତି ବାଣୀ ଶୁଣାଏ । କିନ୍ତୁ ସାଧକର ଧ୍ୟାନଭଗ୍ନ ହୁଏ ନାହିଁ ।

*   *   *   *

ଶଙ୍ଖ ଶୁଭେ—ବୁଦ୍ଧଂ ଶରଣଂ ଗଚ୍ଛାମି
ଧ୍ୱନି ଉଠେ—ହିଂସା ବହୂରିତ ହେଉ
ତଥାପି ତପସ୍ୟାର ଶେଷ ନାହିଁ କିମ୍ବା ଆରମ୍ଭ ନାହିଁ ।

*   *   *   *

ଦିନେ ସେହି ଆସନ ଉପରେ ସନ୍ନ୍ୟାସୀର ଦେହ ଢଳି ପଡ଼ିଥିଲା । ଅନୁତପ୍ତା କୁମାରୀ ସେଦିନ ଭୂର୍ଜପତ୍ର ଲିଖିତ ଖଣ୍ଡିଏ ଚିଠାଟି ସେହି ସନ୍ନ୍ୟାସୀଙ୍କର ଆସନ ତଳରୁ ପାଇଥିଲା ।

"ଇତର ଜୀବକୁ କଷ୍ଟ ଦେବାରେ ବା ହିଂସା ଆଚରଣ କରିବାରେ ପାପ ହୁଏ । କିନ୍ତୁ ହିଂସ୍ର ଆଚରଣ କରିବା ପଶୁଙ୍କଠାରୁ ଆପଣାକୁ ରକ୍ଷା କରିବାକୁ ଯାଇ ମଣିଷ ନିଜ ପ୍ରତି ଯେଉଁ ହିଂସା ଆଚରଣ କରେ ତା' କମ୍ ପରିତାପର ବିଷୟ ନୁହେଁ । ଗୋଟିକୁ ସମର୍ଥନ କରି ଅନ୍ୟଟିକୁ ଉପେକ୍ଷା କରିବା ବୋଧହୁଏ ମନୁଷ୍ୟ ପକ୍ଷରେ ଅସମ୍ଭବ ।"

ତାର ଉତ୍ତର କୁମାରଙ୍କ ଅନୁରୋଧରେ କୁମାରୀ ଲେଖିଥିଲେ—"ସଂଘରେ ନାରୀର ସ୍ଥାନ ଅପରିହାର୍ଯ୍ୟ । କାରଣ ସାଧକ ଜୀବନରେ ନାରୀ ପ୍ରେରଣା—ସଂଯମୀ ଜୀବନରେ ନାରୀ ଶୃଙ୍ଖଳା । ନାରୀକୁ ନିଜ ଭିତରେ ଦେଖିବାକୁ ଚେଷ୍ଟା କଲେ ନାରୀ, ବାସନା, ବିଳାସ, ହିଂସାର ମୂର୍ତ୍ତିମତୀ । କିନ୍ତୁ ନାରୀ ଭିତରେ ନିଜକୁ ଦେଖିବାକୁ ଚେଷ୍ଟାକଲେ ନାରୀ ତ୍ୟାଗ ଓ କଲ୍ୟାଣର ପ୍ରତିମା । ନାରୀର ସତ୍ୟ ଅବସ୍ଥିତିକୁ ଅସ୍ୱୀକାର କରିବା ଅର୍ଥ ମିଥ୍ୟାକୁ ପ୍ରଶ୍ରୟ ଦେବା ।

* * * *

ରାଜକୁମାର ଗୋଟିଏ ସ୍ମୃତିଫଳକରେ ତାର ସମାଧାନ କରି ଯାଇଥିଲେ—

'ଯାହା ଜୀବନରେ ସମ୍ଭବ ନହୁଏ ତା' କେବଳ ମୃତ୍ୟୁରେହିଁ ସମ୍ଭବ ହୋଇପାରେ ।

* * *

# ଦଣ୍ଡି

ଫୁଲ ବଗିଚାରେ ଫୁଲ ଫୁଟେ । ମୂଲ କେହି ବୁଝେ ନାହିଁ । ମୂଲ ତାର ନାହିଁ । ଯାଞ୍ଚ ପୂଞ୍ଚ ମଲ୍ଲୀ ମାଳତୀର ମୂଲ ବସେ । ତା'ର କି ମୂଲ । ମଞ୍ଚାତଳ ଗୁଛରେ ଦୂବ କିଆର ଧାରରେ ଲଟେଇ ମାଡ଼ିଛି ସରୁ ଲତାଟିଏ । ତା'ର ମୂନରେ ଫୁଲଟିଏ । ଏଠି ସେଠି ଦୁଇଚାରିଟା ଫୁଲ କାନଶିରା ନୁହେଁ । ସେଇମିତିକା—ସେଇ ଜାତିର ।

"ଏ କି ଫୁଲ ମାଲୁଶ୍ରୀ ?"

"କିଜାଣି !"

କେହି ଜାଣନ୍ତି ନାହିଁ ସେ କି ଫୁଲ । ଆନନ୍ଦ ନିତି ନିତି ଯାଇଁ ସେଇ ଫୁଲ ପାଖରେ ଠିଆ ହୁଏ । ଭଲ ଲାଗେ । ପଛଆଡ଼େ ନାନା ଜାତିର ଫୁଲ । ସେ ବାସନା ତା ନାକ ଭିତରେ ପରଶ ସଞ୍ଚାର କରେ ନାହିଁ । ଗୋଲାପର ଗଣ୍ଡି ଅଭିମାନରେ ନାଲି ହୋଇ ଉଠେ । ଅପରାଜିତା ଦୁଃଖରେ କାଳି ପଡ଼ିଯାଏ । ତସ୍ୱ ଚାହିଁ ରହେ ଧଳା ଧଳା ଆଖିରେ । କଳା ଡୋଳା ତାର ପତା ଭିତରେ ଲୁଚିଯାଇଛି ଯେମିତି । ମଲ୍ଲୀ, ମଲ୍ ମଲ୍ ବୋଲି ଝାଙ୍କି ପଡ଼େ । ଆନନ୍ଦ ଚାହେଁ ନାହିଁ । ଆନନ୍ଦକୁ ଆଉ କିଛି ଭଲ ଲାଗେ ନାହିଁ ।

ଭଲ ଲାଗିବାର କାରଣ ନଥାଏ । କାହାକୁ କାହିଁକି କିଏ କେଉଁଠି ଭଲ ଲାଗେ ତାର ଧରାବନ୍ଧା ଗତ ନାହିଁ । ହାରମୋନିୟମ୍‌ର ସାଣ୍ଡ୍ ଛପିଲେ ସେ ବାଜେ ନାହିଁ ।

ସୌନ୍ଦର୍ଯ୍ୟ ? ବାସନା ? ନାଃ । ରୂପ ଗୁଣ ଚକ୍ଷୁଁରେ ନାହିଁ । ଭଲ ଲାଗିବାର ମୌଳିକ ଗୁଣଗୁଡ଼ିକ ଗୁଣନିଯୁକ୍ତ ସବୁ ସେଇଠି ଭଲ ଲାଗିବା ।

ସେଇ ଫୁଲଟି ତାକୁ ଭଲ ଲାଗେ । ମାଲୁଣୀ ହସେ । କି ପୁଅ ଲୋ ଏ ମା !

ଆନନ୍ଦ ସେ ଫୁଲକୁ ହାତରେ ଧରେ ! ତୋଳେ ନାହିଁ । ହାତକୁ ଆଣି ନାକ ପାଖକୁ ନେଇ ନେଇ ଚମକି ପଡ଼େ । ହାତ ଥମିଯାଏ । ନାକରେ ଲାଗେ ନାହିଁ ।

ଧୀରେ ଧୀରେ ଆପଣା ଗଣ୍ଡକୁ ନେଇ ସେଇ ଫୁଲର ପାଖୁଡ଼ା ଦେହରେ ଘଷିଦେବାକୁ ମନ କରେ । ମୁନିଆ ପତର ଫୋଡ଼ି ହୋଇ ଯାଏ । ମନ ତାର ଭାଙ୍ଗିଯାଏ ।

ଧନର ଅପରିଶ୍ରାନ୍ତ କର୍ମ ଭିତରେ ସେ କେଉଁଠି ସେ ଫୁଲକୁ ହଜାଇଥାଏ କିଜାଣି ! ସଞ୍ଜ ହେଲେ ସେ ଫୁଲର ଭୂତ ଆସି ତାକୁ ରେଶମୀ ଆବାଜରେ ଡାକେ—ସେ ରହି ପାରେନାହିଁ । ସବୁ କାମ ଛାଡ଼ି ସେ ଯାଏ ସେଇ ଫୁଲ ପାଖକୁ । ସଂସାରର ସବୁ ଭାରା, ସବୁ ଦାୟିତ୍ୱର ବୋଝକୁ ସେ ଦଣ୍ଡକ ପାଇଁ ଫିଙ୍ଗିଦିଏ । ଶରୀରର ସମ୍ଭୋଗ କ୍ଷଣକପାଇଁ ତୁଚ୍ଛ ହୋଇଯାଏ । ଅଶନ ବ୍ୟସନ ପିତା ଲାଗେ । ଯଶସ୍ୱୀ ପ୍ରଶଂସା ବିରକ୍ତି ଆଣିଦିଏ । ଆନନ୍ଦ ଚାଲେ ସେଇ ଅଜ୍ଞାତ କୁଳଶୀଳା କୁସୁମ କଳିକାର ସନ୍ନିଧିକୁ ।

ମାଇପିଟିଏ ଆସି କହେ—ପୁଅ, ସେ ଫୁଲରେ ହାତ ଦେବୁ-ନାହିଁ । ସେ ଫୁଲ ଲଗେଇଛି ମୋ ପୁଅ !

"ପୁଅ !" ଆନନ୍ଦ ଆଶ୍ଚର୍ଯ୍ୟ ହୁଏ ।

"ହଁ, ହଁ ମୋ ପୁଅ । ରଜାଙ୍କ ରଣ ଡାକରା ଆସିଲା । ସେ ଗଲା । ଯାଇଛି ଯେ ଆଜ ଫେରନାହିଁ—ତନିବର୍ଷ ହେଲାଣି । ଯିବା ଦନ ସେଇ ଫୁଲଟିକୁ ସେ ଲଗେଇ ଦେଇ ଗଲା । ଏ ଫୁଲ ଥିବାଯାକେ ମୋ ପୁଅ ମୁଣ୍ଡରୁ ସବୁ ବିପଦ ଟଳି ପଡ଼ିବ । ଏ ଫୁଲ ମଉଳି ଗଲେ କି ମରିଗଲେ ଆଉ ମୋ ପୁଅ ବଞ୍ଚିବ ନାହିଁ । ଜାଣିଥା—ସେ ଫୁଲରେ ହାତ ଦେବୁନାହିଁ ।"

ମାଇପିଟି ଚାଲିଯାଏ । ଅନନ୍ଦ ସେଇମିତି ଚାହିଁ ଥାଏ ।

ଦନ ପରେ ଦନ ଚାଲିଯାଏ । ମାଇପିଟିର ପୁଅ ଫେରେନାହିଁ । ଯୁଦ୍ଧ ସରର ନାହିଁ । ଅନନ୍ଦ ନିତ ଆସେ । ସେ ଫୁଲକୁ ଦେଖିଯାଏ । ନିତ ନିତ ନୂଆ ନୂଆ ଫୁଲ ଫୁଟେ । ପୁରୁଣା ଝଡ଼ି ପଡ଼େ । କନ୍ତୁ ଫୁଲ ଥାଏ । ସବୁଦନିକା ପୁରୁଣା ଜନିସଟା ନିତ ନୂଆ ନୂଆ ପସରା ବାଡିଲେ ଭଲ ପାଇବା ଲୋକଙ୍କୁ ଭଲ ଲାଗିବା ଭିତରେ ଗୋଟେ ଭୟ ଥାଏ ସେଟା କ କଥାକୁ କେହି ବୁଝିପାରନ୍ତି ନାହିଁ । ହୁଏ ତ ଆପଣାକୁ ଭୁଲିଯିବାର ଭୟ ହୋଇପାରେ ।

... ... ...

ଯୁଦ୍ଧ ସରିଛି । ମାଇପିଟିର ପୁଅ ଘରକୁ ଫେରିଛି ।

ଚାରିଆଡ଼େ ଉଛବ । ଚାରିଆଡ଼େ ଚହଲ ପଡ଼ିଯାଇଛି । ପାଇକ-ମାନେ ହୋ-ହାଲଲା ପକାଇ ମାତିଚନ୍ତି ନାଚ ଗୀତରେ ।

ଅନନ୍ଦ ଧୀରେ ଧୀରେ ସେଇ ଫୁଲ ବଗିଚାକୁ ଗଲା ।

ଫୁଲ ନାହିଁ ! ଫୁଲ ନାହିଁ !

"ମାଲୁଣୀ, ଫୁଲ ?"

ସେ ମାଇପିଟିର ପୁଅ ଆସିଲା ।

"ମାଲୁଣୀ, ମୋ ଫୁଲ !"

ଫୁଲ କିଏ ନେଲା ! ରାଜ ଦରବାରରେ ପଡ଼ିଲା ବିଚାର । ଆନନ୍ଦ ମାନିଲା—ସେ ନିତି ନିତି ସେ ଫୁଲ ଦେଖିବାକୁ ଆସେ । ସେ ଫୁଲକୁ ତା' ଛଡ଼ା ଆଉ କେହୁ ଦେଖି ନଥିଲେ । ଆନନ୍ଦକୁ ମିଳିଲା ଦଣ୍ଡ । ରାଜକୁମାର ବିଚାର କଲେ ।

ସେଦିନ ଆନନ୍ଦ ହସି ହସି ସେ ଦଣ୍ଡ ବରଣ କରିଥିଲା । ଖାଲି ଭଲ ପାଇବାର ବଣ୍ଡ ।

କିନ୍ତୁ ଫୁଲ ଥିଲା ରାଜକୁମାରଙ୍କ ବେକରେ । ଆନନ୍ଦ ଦେଖିଛି ।

ଆନନ୍ଦର ହୃଦୟ ପରି ଅସଂଖ୍ୟ ହୃଦୟ । ଏ ସଂସାରରେ ଚିରିଦିନ ଦଣ୍ଡ ଭୋଗୁଛନ୍ତି ।

... ... ...

# ମନେ ମନେ

କେହି ନଥାନ୍ତି—ସତ୍ୟ ନଥାଏ—ଆଉ ଥାଏ ସଞ୍ଜୁଆଳୀ ତାରା—ଜଳୁଥାଏ ଜକ ଜକ ହୋଇ—ଜହ୍ନ ନଥାଏ—ଅନ୍ଧାର ପକ୍ଷ ।

ଭଲ ପାଇବାର ପରିଚୟ ମାଗି ସେଇ ପ୍ରଶ୍ନ ଆସିଲା—ସେଇ ଆଦମ ଯୁଗର ପ୍ରଶ୍ନ । "ତମେ ମୋତେ ଭଲ ପାଅ ?"

ତା'ର ଉତ୍ତର 'ନା' ହୋଇପାରେ ନା । ସେ ପ୍ରଶ୍ନର ଉତ୍ତର ସେ ନିଜେ । ଉତ୍ତର ପାଇବାର ଥିଲେ ସେ ପ୍ରଶ୍ନ ଉଠି ନଥାନ୍ତା । ସେ ପ୍ରଶ୍ନ ହୃଦୟର କେତେ ଆଲୋଡ଼ନ କେତେ ଆନ୍ଦୋଳନ ପରେ ଉଠିଛି । ସେ ପ୍ରଶ୍ନ ନିଜ ଭିତରେ କେତେଥର ମରି ପୁଣି ନୂଆ ଜୀବନ ପାଇଛି । ସେ ପ୍ରଶ୍ନର ଉତ୍ତର କେତେଥର ମନେ ମନେ ଦୋଅ ସନ୍ଦେଶ—ଅସ୍ତି ନାସ୍ତି ହୋଇ । ସେ ପ୍ରଶ୍ନ କେତେ ପୁଲକ ଆଣିଛି ଆଉ କେତେ ଅଶ୍ରୁ ।

ସେଇ ପ୍ରଶ୍ନ ତାର ବ ପଚାରିବାର ଥିଲା । ସେଥିପାଇଁ ସେ ପ୍ରଶ୍ନର ଉତ୍ତର 'ନାଁ' ହୋଇ ପାରେନା । ଯେଉଁ ପ୍ରଶ୍ନର ଉତ୍ତର ଏକ ସେ ପ୍ରଶ୍ନ ପ୍ରଶ୍ନ ନୁହେଁ—ଆଦେଶ । 'ଭଲ ପାଅ ?' ନୁହେଁ—'ଭଲ ପାଇବାକୁ ହବ ।'

ଭଲ ପାଇବାକୁ ହେବ । ସେ ବି ଭଲ ପାଇବ । କ'ଣ କଥାରେ ? ଭଲ ପାଇବାଟା କ'ଣ କେବଳ କଥାର କଥା ? ଭଲ ପାଇବାର ବିନିମୟ କେବଳ କ'ଣ ମନେ ମନେ ହୁଏ ? ତାର

ନିବେଦନ କ'ଣ ? ଯାହା ମନରେ ଉଠେ ସେ ଭାବ । ଭାବର ଅଭି-ପ୍ରକାଶ କଲା । ପ୍ରେମ କ'ଣ କେବଳ ଭାବ—ତାର ବିକାଶ ନାହିଁ ?

ପ୍ରେମର ନିବେଦନ କ'ଣ ହୋଇପାରେ ! ସେ ପଚାରିବ—'ତମେ ମୋତେ କ'ଣ ଦେଇପାର ?'

ତାର ଉତ୍ତର ହବ—'ମୁଁ ତୋତେ କ'ଣ ନ ଦେଇପାରେ ?'

ହସ ମାଡ଼େ । ମଣିଷ କ'ଣ ଦେଇପାରେ କାହାକୁ ? କିଛି ଦେଇପାରେ ନାହିଁ । ଅଥଚ ପ୍ରଶ୍ନର ଉତ୍ତରରେ ସେ କହିଦିଏ 'ସବୁ ଦେଇ ପାରେ ।' ପ୍ରେମ ପାଇଁ ସେ ସବୁ ଛାଡ଼ିପାରେ । ଜାତି, କୁଳ, ଧର୍ମ, ସମାଜ, ଲଜ୍ଜା ସରମ, ମାନ ଅଭିମାନ, ଧନ, ସମ୍ପତ୍ତି, ଜୀବନ ସବୁ ତ୍ୟାଗ କରିପାରେ । ଭଲ ପାଇବାକୁ ହେଲେ ତାକୁ କିଛି ଛାଡ଼ିବାକୁ ହେବ ନାହିଁ—ସବୁ ଧରି ରଖିବାକୁ ହବ ।

'ଏ ବିବାହରେ ବାପ ମା' ରାଜି ନୁହନ୍ତି ।'

'ମୋ ପାଇଁ ତମେ ବାପ ମା'ଙ୍କୁ ଛାଡ଼ି ପାରିବ ?"

ତାର ଉତ୍ତର ହେବ—'ନା' । ସେ କାନ୍ଦିବ । ଏ ଭଲ ପାଇ-ବାକୁ ଛଳନା ବୋଲି ଭାବିବ । କିନ୍ତୁ ପ୍ରକୃତରେ ଏ ଭଲ ପାଇବା ଛଳନା ନୁହେଁ ପ୍ରକୃତ । ଆଜି ଯେ ବାପ ମା'ଙ୍କୁ ଛାଡ଼ି ବିବାହ କରିବାକୁ ଯିବେ ସେ ପୁଣି କାଲି ବାପ ମା ହେବେ ତ !

"ଦୁନିଆ ଏକ ପକ୍ଷରେ—ଆଉ ମୁଁ ଏକ ପକ୍ଷରେ—ତମେ କାହାକୁ ଚାହିଁ ?"

ମଜାର ପ୍ରଶ୍ନ । ଦୁନିଆଠାରୁ ସେ ହୁଏ ତ ବଡ଼ । କିନ୍ତୁ ଦୁନି-ଆକୁ ଛାଡ଼ି ତାକୁ ନେବାର କୌଣସି ଅର୍ଥ ହୁଏ ନାହିଁ । ଦୁନିଆରେଇ ତ ଦୁହିଁଙ୍କ ରହିବାକୁ ହବ ।

ଜାତି, କୁଳ, ଧର୍ମ, ସମାଜ, ଧନ ସମ୍ପତ୍ତି ସବୁକୁ ଛାଡ଼ିଦେଇ ପୁରୁଷ ପ୍ରଣୟିନୀକୁ ଧରି ଚାଲିଯାଇ ପାରେ । କିନ୍ତୁ ଜାତି, କୁଳ, ଧର୍ମ, ସମାଜ, ଧନ, ସମ୍ପତ୍ତି ତାକୁ ଛାଡ଼ିଦେବ ନାହିଁ । ନୂଆ ଜାତି, ନୂଆ କୁଳ, ନୂଆ ଧର୍ମ, ନୂଆ ସମାଜ, ନୂଆ ଜରି ଘର ଦ୍ୱାର ଧନ ସମ୍ପତ୍ତି ସବୁ ଗଢ଼ି ଉଠିବ ।

"ମୁଁ ଚାହେଁ ତମର ହୃଦୟ !"

ଗୋଟାଏ ମାଗିଲା ଭଲ ଜିନିସ ଏକା । କେହି ଦେଖିନାହାଁ ହୃଦୟ କେଉଁଠି ଥାଏ । ତାକୁଇ ପୁଣି ଦେବାର ପ୍ରତିଜ୍ଞା କରିବାକୁ ହବ । ଦେବାକୁ ହବ । ତାଠୁଁ ବଳି ମିଛ ଆଉ କ'ଣ ହେଇପାରେ ?

ହୃଦୟ ? ହୃଦୟ ? କେଉଁଠି ଥାଏ ସେ ସତେ ?

ହୃଦୟ ନାହିଁ କେଉଁଠି ? ହୃଦୟ ତ ସବୁଠି ଅଛି । ହୃଦୟ ମଣିଷ ଭିତରେ ନଥାଏ ହୃଦୟର ପରିଚୟ ପାଏ ମଣିଷ ଆପଣାର ବାହାରେ । ତାର ପ୍ରତ୍ୟେକ ଦୈନନ୍ଦିନ କାମରେ ସେ ଦେଖେ ତାର ହୃଦୟକୁ । ହୃଦୟ ନ ଦେଖି ସେ ଗୋଟାଏ ପାଦ ବି ଆଗେଇ ନପାରେ । ପ୍ରଶ୍ନ ଉଠେ । ସେ କେଉଁଠି କେତେ ହୃଦୟ ଥିବାର ଦେଖେ । ହୃଦୟଟା ବିଚ୍ଛୁରିତ ହୋଇ ପଡ଼ିଛି—ଚାରିଆଡ଼େ । ତାକୁ ବାନ୍ଧି ଗୋଟାଏ ଯାଗାରେ ଦେଇଦେଲେ ଶରୀର ଯାତ୍ରା ବି ଅସମ୍ଭବ ହେଇ ପଡ଼ିବ । ତେଣୁ ହୃଦୟଟାକୁ ପୂରା ପୂରି ଜଣକୁ ଦେବା କଥାଟା ନିହାତି ଆତ୍ମ ପ୍ରତାରଣା । ବରଂ ଅପରର ହୃଦୟ ନେଇ ପ୍ରେୟସୀର ଭଲ ପାଇବାକୁ ନେଇ, ଦୈନନ୍ଦିନ କାର୍ଯ୍ୟରେ ଲଗେଇ ଦେଇ ପାରିଲେ ନୀରସ କାମ ରସ ଯୁକ୍ତ ହେଇଯିବ । ସେ ଭଲ ପାଇବା—ସେ ହୃଦୟକୁ ନେବାର କଥା, କେହି ଦେବା ନଦେବାର

ପ୍ରଶ୍ନ ନାହିଁ । ହୃଦୟ ଦିଅ ? ହୃଦୟ ନିଅ । ତମେ ଯେତେ ନେଇ ପାରିବ ନିଅ । ତମେ ଯେତେ ନେବ ସେତିକି ଦେଇ ହେବ । ହୃଦୟର ସୀମା ନାହିଁ । ଭଲ ପାଇବାର ଶେଷ ନାହିଁ ।

"ପୁଲିସ, ପୁଲିସ !"

"ମୁଁ ଜାଣେ ।"

"ତମକୁ ଛାଡ଼ିବାକୁ ହବ—ଏ ଦେଶ କାମ ଛାଡ଼ିବାକୁ ହବ—ଏ ଖଦଡ଼ ଛାଡ଼ିବାକୁ ହବ । ସରକାରକୁ ଲେଖିଦିଅ, ତମେ ଆଉ ରାଜନୀତି କରିବ ନାହିଁ । ଶୁଣିଁ, ମୋତେ ଶୁଣି; ତମକୁ ଛାଡ଼ି ମୁଁ ରହିପାରିବି ନାହିଁ ଦଣ୍ଡେ—ବଞ୍ଚିପାରିବି ନାହିଁ ।

ସବୁଠାରୁ ବଡ଼ ଜିନିସ ଶୁଣିଛ, ଏଥର ପ୍ରଣୟର ପ୍ରତିଦାନରେ ସେ ହେଉଛି ସତ୍ୟ । ଦରିଦ୍ରର ସେବା—ଦେଶର ସେବାଟା ଗୋଟାଏ ବ୍ରତ, ସତ୍ୟ । ପ୍ରଣୟ ପାଇ ଜୀବନ ମାଗିଥିଲେ ହୁଏତ କେହି ଭାବ ଆବେଶରେ ସେଭଳି ମୂର୍ଖତା କରି ଜୀଇବା ସହିତ ପ୍ରଣୟ ସୁଖରୁ ବି ବଞ୍ଚିତ ହୋଇପାରେ । କିନ୍ତୁ ଆପଣାର ସତ୍ୟକୁ ଛାଡ଼ି ବଞ୍ଚିବାରର କୌଣସି ଅର୍ଥ ହୁଏ ନାହିଁ ।

"ମୋ ପାଇଁ ତମକୁ ଏ ସତ୍ୟ ଛାଡ଼ିବାକୁ ହେବ ।"

ପ୍ରଣୟ ଡମ ପାଇଁ ଅଜି ଯଦି ଏଇ ସତ୍ୟକୁ ଛାଡ଼ିଦେଇ ହୁଏ, ତେବେ ଆପଣାର ପ୍ରେମିକାକୁ ପ୍ରଣୟ କରି ବିଶ୍ୱସ୍ତ ରହିବାର ସତ୍ୟଟାକୁ ମଧ୍ୟ ଆଉ କେତେବେଳେ ଭଙ୍ଗ କରି ଦେଇ ହେବ—ଅତି ସହଜରେ ।

ସଞ୍ଜୁଅଳା ତରାଟା ମସିଆ ଦିଶିଲାଣି । ଲଭିଯିବ ତ ସେ ପୁଣି ?

   

ଏ କେବଳ କଳ୍ପନା ଥିଲା—

ଗପଟା କ'ଣ କହୁଦାଏ ବନ୍ଧୁଙ୍କରେ ।

ବିଦ୍ୟୁତ୍ ଜଣେ କଂଗ୍ରେସ କର୍ମୀ । ଦେଶ ସେବୀ । କାନ୍ଧରେ ଝୁଲି ପକେଇ ଖଦି ବରଷାରେ ଗାଁ ଗହଳିରେ ବୁଲିବାର ତାଙ୍କୁ ଅନେକ ଲୋକ ଦେଖିଥିବେ । କେବଳ ଦେଖି ନଥିବେ ତାଙ୍କୁ ସେ ଯେତେ ବର୍ଷ ଜେଲ ଭିତରେ ରହିଛନ୍ତି ।

ଜେଲରୁ ମୁକୁଳି ଆସିଲା । ବୋଉ କହିଲେ ବାହା ହ, ଅପା କହିଲା ବାହା, ସାହି ପଡ଼ିଶା ସମସ୍ତେ । ତାର ସେଇ ଗୋଟିଏ କଥା—ନାଁ, କାରଣ ? କାରଣ ସେ କହେ ତା ପାଇଁ କନିଆ ଜନ୍ମ ହୋଇନାହିଁ । ମଫସଲି ଝିଅ ! ସେ ତାଙ୍କୁ ବୁଝି ପାରିବ ନାହିଁ—ତେଣୁ ଗରିବ ବାଳିକାଟିର ଜୀବନ ନଷ୍ଟ ହୋଇଯିବ । ପାଠୋଇ ଝିଅ—କଲେଜ ଗାର୍ଲ ? ଉହୁଁ—ଘରେ ତ ବହି ଲାଇବ୍ରେରୀ ଅଛି । ପାଠୋଇ ଝିଅର କି ଦରକାର ।

ହଠାତ୍ ଦିନେ ଦେଖା ହେଲା ଲତା ସାଙ୍ଗରେ । ସେ କହେ ଲତା କଲେଜରେ ପଢିଲେ ବି ତାର ମୌଳିକତା ଅଛି । ମଫସଲି ଝିଅ ହେଲେ ବି ବୁଝିବାର କ୍ଷମତା ଅଛି ।

ତାପରେ ଏମିତି କେତେ କଳ୍ପନା—କେତେ ଭାବଧାରାର ଗଠନ—କେତେ ସ୍ୱପ୍ନ—କେତେ ସଞ୍ଜୁଆଳି ତାରା ।

ପ୍ରେମଟା ଦୁଇ ପକ୍ଷର ବିନିମୟରେ ହୁଏ ନାହିଁ । ଦୁଇ-ପକ୍ଷର ବିନିମୟରେ ଯାହା ହୁଏ ସେଟା ସଉଦା । ଲତା କିନ୍ତୁ ବୁଝି-ନଥିଲା ବିଦ୍ୟୁତ୍ ।

ଅଜବ ପଚରାଯାଏ ବନ୍ଧୁମାନଙ୍କୁ—ବନ୍ଧୁମାନ ତୁ ବାହାଦୂର ନାହିଁ !

ସେ କହେ—ମୁଁ ତ ବାହା ହେଇନ ।

ଗପଟି ଏତକ ।

ଆଜ—ସଞ୍ଜ ତର ଲିଭିଗଲାଣି—ରାତି ଅନେକ ।

# ଜଡ଼ରେ ଚେତନା

ଯୋଷା ବସିଥାଏ । ବସିବାରେ ଗୋଟାଏ ତତ୍ପରତା ଥାଏ ।

ନିକେତନ ଆସେ । ଅସି ବନ୍ଦ ହୋଇଯାଏ । ଯେମିତି ଗୋଟାଏ ଶାନ୍ତ ଛାଇଯାଏ ଚାରିଆଡ଼େ—ମୃତ୍ୟୁର ଶାନ୍ତ ଭଳି ।

ଯୋଷାର ଭିତର ଶୀତଳ ହୋଇଯାଏ । ବରଫ ପଡ଼ି । ଚାଞ୍ଚଲ୍ୟତା ଚାଲିଯାଏ କୁଆଡ଼େ ।

ଆଜ୍ ଆସେ ବଲ୍ଲଭ । ତୁଫାନ ସଦୃଶ । ସବୁ ଦୋହଲିଯାଏ । ସବୁ ଉନ୍ମତ୍ତ ହୋଇ ଉଠେ । ଉଷ୍ମ ପ୍ରସ୍ରବଣ ବହିଯାଏ ଚାରିଆଡ଼େ। ବରଫ ତରଳି ଯାଇଥାଏ ।

ଯୋଷା ଠିକ୍ କରିପାରେ ନାହିଁ—କିଏ ଶ୍ରେୟ ? କିନ୍ତୁ ସେ ବୋଧହୁଏ ଖୋଜୁଥାଏ—କିଏ ପ୍ରେୟ ? ଆପଣାକୁ ଠକିବା ପାଇଁ କହେ—ଶ୍ରେୟ ବଲ୍ଲଭ ।

ବଲ୍ଲଭକୁ ଜଳଖିଆ ଦିଏ ଯୋଷା । ଚା' ଦିଏ । ପାନ ଦିଏ । ହାଉଆରେ ହାଲୁକା ପଣତ ଖେଳି ବୁଲେ । ଗହଳି ମନ ଫାଙ୍କା ପଡ଼ିଯାଏ । ବିଶ୍ରାନ୍ତ । ବ୍ୟସ୍ତ ମନୁଷ୍ୟ ଆଜ୍ ଚାହେଁ କ'ଣ ?

କିନ୍ତୁ ନିକେତନ ? କହେ—ଖାଇବାକୁ ଦେବା ନେବା ଗୋଟେ ଲୌକିକତା । ସେଥିରେ ଅନ୍ତରିକତାର ପରିଚୟ ଯେତିକି ହୋଇ ହୁଏ ତା'ଠାରୁ ପ୍ରକୃତ ଭାବକୁ ଲୁଚାଇ ହୁଏ ବେଶୀ ।

ଯୋଷା 'ମର୍ମାହତ ହୁଏ । ଯୋଷାର ନିବେଦନ ନିକେତନ ଗ୍ରହଣ କରେ ନାହିଁ । ଯୋଷାକୁ ସାନ୍ତ୍ୱନା ଦେଇ ନିକେତନ କହେ,

ତୁମେ ମୋତେ ଖାଇବାକୁ ଦେଉଚ, ମୋର ତୃପ୍ତି, ମୋର ଆନନ୍ଦ ପାଇଁ ତ ? ତୁମେ ଯଦି ଏତକ ମୋର ଏ ଖାଇଲା ପେଟରେ ସ୍ୱାହା ନକରି ଦାଣ୍ଡର ସେ ଭିକାରୀଟିର ନଖାଇଲା ପେଟରେ ଦିଅ ତେବେ ମୋର ତୃପ୍ତି ହେବ ବେଶୀ ।

ଯୋଷା କହେ—ଦେବା ଲୋକର ଦେବାରେ ବି ତ ଗୋଟାଏ ତୃପ୍ତି ଅଛି । ସମସ୍ତଙ୍କୁ ଦେଇ ସମାନ ତୃପ୍ତି ମିଳେ ନାହିଁ ।

ନିକେତନ କହେ—ଯାହାର ଦରକାର ତାକୁ ଦାନ କରି ଯେ ସବୁଠାରୁ ବେଶୀ ତୃପ୍ତି ନପାଏ, ଅଦରକାରରେ ଭଲ ପାଇବା ପରି ଭଲ ପାଇ ମଧ୍ୟ ତୃପ୍ତି ପାଇ ପାରେନାହିଁ ।

ଯୋଷା ଅପମାନ ଓ ଅଭିମାନରେ ଲାଲ ହୋଇଯାଏ ! ନିକେ-ତନ ଉଠି ଠିଆ ହୁଏ ।

ବିଭାସ ମନୁଷ୍ୟ, ପ୍ରକୃତ ମନୁଷ୍ୟ । ସତ୍ୟ ଜୀବନ୍ତ ଭଳି ମନେ ହୁଏ ।

ଆଉ ନିକେତନ ? ସେ ଗୋଟାଏ ଦୂର ଅତୀତର ମୃତ ସ୍ମୃତି ଭଳି ପ୍ରିୟ କିନ୍ତୁ ଯାହାକୁ ଅପେକ୍ଷା କରି ହେବ ନାହିଁ । ଯାହାର ଶବ ଉପରେ ସମାଧି ତୋଳି ହେବ—କିନ୍ତୁ ଘରେ ଥାପନା କରି ପୂଜା ଦେଇ ହେବନାହିଁ ।

ଦିନ ଗଡ଼ିଯାଏ । ଯୋଷା ଓ ବିଭାସର ମିଳନରେ ସ୍ୱପ୍ନ ନିବିଡ଼ ହୋଇ ଉଠେ—ଦିନ ଠିକ୍ ହେଲା । ବେଶ ବନ୍ଦୋବସ୍ତ ହୋଇଯାଏ—ବିନ୍ୟାସ ବିଭୋର ।

ନିକେତନ କାହିଁ ! ନିକେତନର ଗୋଟାଏ ଛାୟା—ଏ ଦୁହିଙ୍କି ଗୋଡ଼ାଉଥାଏ—ଏ ଦୁହିଙ୍କ ଗତି ବିଧିକୁ ଲକ୍ଷ କରୁଥାଏ ଯେମିତି ।

ପ୍ରଣୟ କାହାଣୀର ଏଇଁ ବିଭୁଜ ଠାଣିରେ ଯୋଷାର ଅଶ୍ରଦ୍ଧା ଆସେ । ନିକେତନକୁ ସେ ମନରୁ ଲିଭି ପୋଛି ପରିସ୍କାର କରିଦିଏ । ନିକେତନ ବୋଲି କେହି ନ ଥିଲା । ଅଛି କେବଳ ବିଭାସ । ଭୋଗରେ ବିଶ୍ରାମ ନାହିଁ, ଅଛି କେବଳ ତୃପ୍ତିରତା । କାହାର ଆଶ୍ରୟରେ ଭୋଗ ମିଳେ ନାହିଁ—ଭୋଗ ମିଳେ ଆପଣାର କ୍ଷମତାରେ ।

ବିଭାସ କିନ୍ତୁ ରହେନାହିଁ ସବୁବେଳେ । ଅନ୍ତତଃ ଯୋଷା ଯେତେ ଚାହେଁ ସେତେ ନୁହେଁ । ଯୋଷା ବୁଝିପାରେ କି ନାହିଁ କିଜାଣି—ଚପଳାର ଚମକ ଭଳି । ସେଇ କ୍ଷଣ କ୍ଷଣକୁ ନେଇ ଜୀବନ । ଉପଭୋଗର ଯେଉଁ କ୍ଷଣ ଆସେ ତାକୁଇ ଗ୍ରହଣ କରିବା-ପାଇଁ ମନୁଷ୍ୟ ପ୍ରସ୍ତୁତ ହେବା ଉଚିତ ।

କିନ୍ତୁ କ୍ଷଣ କ୍ଷଣ ହୋଇ ଜୀବନ ପଳାଇ ଯାଉଚି ଚପଳା ପରି । ମଣିଷ ତାକୁ ଧରି ରଖିପାରେ ନାହିଁ । ଉପଭୋଗ କରୁ ନ କରୁଣୁ ଜୀବନର ଗୋଟିଏ କ୍ଷଣ ଲିଭିଯାଏ । ଆଉ ଗୋଟିଏ ମୁହୂର୍ତ୍ତ ପାଇଁ ପ୍ରସ୍ତୁତ ହେବାକୁ ହୁଏ । ପ୍ରସ୍ତୁତ ହେଉ ନ ହେଉଣୁ ସେ ମଧ୍ୟ ମିଳେଇ ଯାଏ କୁଆଡ଼େ । ଯୋଷା କରେ କ'ଣ !

ହଠାତ୍ ଆକାଶରୁ ମେଘ ଉଡ଼ି ଯାଇଛି । ବିଜୁଳିର ଚମକ ନାହିଁ । ବିଭାସ ଯୋଷାକୁ ଛାଡି ଚାଲି ଯାଇଛି । ଯୋଷାର ଦୁଃଖ ହୁଏ । ଦୁଃଖରୁ କ୍ଷୋଭ । ଦୁଃଖରୁ ଅନୁତାପ । ସେ ଆପଣାକୁ ପରିହାସ କରେ !

ଆଉ ଏକ ଅଦ୍ଭୁତ ଅନୁଭୂତି । ତାର ରାଗ ହୁଏନାହିଁ, ବିଭାସ ଉପରେ । ତାର ହିଂସା ହୁଏ ଆଉ ଏକ କଳ୍ପିତା ନାୟିକା ଉପରେ—ଯେ ବିଭାସକୁ ଧରି ରଖିଥିବ । କେଡ଼େ ଭାଗ୍ୟବତୀ ସେ ।

କୋଡ଼େ କୁଶଳ। ସେ। ବିଶ୍ୱାସ ବଡ଼ ହୋଇ ଉଠେ। ପୁଣି ଅଭାବ ଅନୁଭବ କରେ ସେତିକି ବେଶୀ।

"ଯେଉଁମାନେ ଫେରି ନିକେତନକୁ ଚାହିଁବାକୁ ଲଜ୍ଜା ବୋଧହୁଏ। ଯା ଛାଡ଼ିଛି, ତାକୁ ଆଉ ଚାହିଁବାର ନୁହେଁ। ଯାହା ଯାଇଛି କେବଳ ତାରି ପାଇଁ ଦୁଃଖ।

ବିଶ୍ୱାସର ଦୋଷ କ'ଣ। ବିଜୁଳିଟା ଲିଭିଯାଏ—ଚାଲିଯାଏ—ତାର କି ଦୋଷ। ତଥାପି ବିଜୁଳି ସୁନ୍ଦର—ବିଜୁଳି ଉଜ୍ଜ୍ୱଳତମ—ବିଜୁଳି ତାରା ନୁହେଁ—ବିଜୁଳି ତେଲ ଦୀପ ନୁହେଁ।

ବୈଜ୍ଞାନିକ ନିକେତନର ନୂତନ ଆବିଷ୍କାର ପାଇଁ ଅଭିନନ୍ଦନ ସଭାରେ। ସହରର ବିଶିଷ୍ଟ ଲୋକଙ୍କ ସମାଗମ। ତା' ଭିତରେ ଯୋଷା। ତାକୁ କେହି ଦେଖିପାରୁ ନାହାନ୍ତି। ଯିଏ ସମସ୍ତଙ୍କୁ ଦେଖୁଛି ଏକାଥରେ ସେଇ ଦେଖୁଛି ତାକୁ ସମସ୍ତଙ୍କ ସାଙ୍ଗରେ। ସମସ୍ତେ ଦେଖୁଚନ୍ତି ତାକୁ। କିନ୍ତୁ କେହି ଜଣେ ଦେଖୁନାହିଁ। ସମସ୍ତଙ୍କ ଭିତରେ ସେ ଦେଖାଯାଉଛି—କିନ୍ତୁ ସେ ନିଜେ ଦେଖାଯାଉନାହିଁ। ଅନ୍ତତଃ ନିକେତନ ଦେଖିନାହିଁ।

ସେ କିନ୍ତୁ ନିକେତନକୁ ଦେଖୁଥିଲା, ନିକେତନକୁ ଦେଖିବାପାଇଁ ଆସିଥିଲା। ନିକେତନକୁ ? ନା—ମିଛ କଥା। ସେ ନିକେତନ ମରିଯାଇଛି। ଆଜି ସେ ଦେଖିବାକୁ ଆସିଛି ବୈଜ୍ଞାନିକ ନିକେତନକୁ। ନିକେତନ ଭିତରେ ଜଣେ ବୈଜ୍ଞାନିକକୁ। ଯେମିତି ନିକେତନ ମରି ଗୋଟାଏ ବୈଜ୍ଞାନିକ ଭୂତ ପାଲଟି ଯାଇଛି। ଗୋଟାଏ କୌତୁହଳ—ଉତ୍ସାହ ନୁହେଁ।

ସମସ୍ତେ ଚାହିଁଚନ୍ତି ନିକେତନର ମସ୍ତିଷ୍କକୁ—ବିସ୍ମିତ ଲଲାଟ—ଉନ୍ନତ ମସ୍ତକ। କିନ୍ତୁ କିଏ ଦେଖିଛି ପ୍ରକୃତ ନିକେତନକୁ। ନିକେତନ

'ସେ ମନୁଷ୍ୟ, ନିକେତନ ଯେ କେବଳ ମସ୍ତିଷ୍କର ସମାବେଶ ନୁହେଁ ସେ କଥା କିଏ ବୁଝୁଛି । ନିକେତନର ହୃଦୟ କେହି ଦେଖିନାହିଁ ନିକେତନ ଭାବେ, ମସ୍ତିଷ୍କଟା ତ ତାର ନୁହେଁ—ମସ୍ତିଷ୍କ ବିଜ୍ଞାନର । ମସ୍ତିଷ୍କ ଓ ବିଜ୍ଞାନ—ପରସ୍ପର ପରସ୍ପରକୁ ଭଲ ପାଆନ୍ତି । ତାର ଆନନ୍ଦ କେବଳ ଉଭୟଙ୍କ ମିଳନରେ । କିନ୍ତୁ ସେ ଆନନ୍ଦତ ଭିକ୍ଷା—ମାଗି ଅଣା । ସେ ଆନନ୍ଦ ମତ ଓ ବିଜ୍ଞାନର ମିଳନ ଆନନ୍ଦ । ତାର ନିଜର ଆନନ୍ଦ କାହିଁ ?

ଆଜି ଏ ଯେଉଁ ଅଭିନନ୍ଦନ, ତା ମୂଳରେ ବିଜ୍ଞାନର ପ୍ରଶସ୍ତି ଆଉ ବିଜ୍ଞାନର ଜନ୍ମଦାତା ମନୁଷ୍ୟ ମସ୍ତିଷ୍କର ପ୍ରଶସ୍ତି ଛଡ଼ା ଆଉ ଅଛି କ'ଣ ? ନିକେତନର ଦୁଃଖ ହୁଏ । କିନ୍ତୁ ଏମିତ ଗୋଟାଏ ପ୍ରଶସ୍ତି ଗାନ କରାଯାଇ ପାରେ ଯାହାକୁ ମଣିଷ ଆପଣାର ବୋଲି ମନେକରି ସୁଖ ପାଆନ୍ତା । ସେ ପ୍ରଶସ୍ତି କିଏ ଗାଇଛି ତା ଜୀବନରେ ? ସେ ହସେ—ଆପଣାର ଦୁର୍ଭାଗ୍ୟକୁ ।

ନିକେତନର ହୃଦୟ ଲୁଚି ପଡ଼ିଯାଇଛି ମସ୍ତିଷ୍କର ଆଡ଼ମ୍ବର ତଳେ । ଯାହାର ମସ୍ତିଷ୍କ ଥାଏ ତାର ହୃଦୟ ମଧ୍ୟ ଥାଇପାରେ । ଏ କଥା କ'ଣ କେହି ଲକ୍ଷ କରିନାହିଁ ?

କିନ୍ତୁ ନିକେତନର କ'ଣ ହୃଦୟ ଅଛି ? ଯଦି ଥାଏ ସେ ମଧ୍ୟ ଜଡ଼—ପଦାର୍ଥ ବିଜ୍ଞାନର ଗୋଟାଏ ସାମଗ୍ରୀ—କୌଣସି ପ୍ରାମାଣ୍ୟ ବସ୍ତୁର ଉପାଦାନ ବିଶେଷ । ସେ ପ୍ରୟୋଗଶାଳାର ନିର୍ଜୀବ ପରୀକ୍ଷା ପାତ୍ରର ଆଧାର ହୋଇପାରେ ।

ଯୋଷାର ଅଘାତକୁ ନେଇ ସେ ବହୁ ରସାୟନିକ ପଦାର୍ଥକୁ ବିଚୂର୍ଣ୍ଣିତ କରିଥିବା ପରେ ତାର ମନେ ପଡ଼ିଲେ ମନେ ପଡ଼ିପାରେ ।

ସେଇ ଯୋଷା !

ହଁ ସେଇ ଯୋଷା । ଆଜି ପାଞ୍ଚଜଣ ଝିଅଙ୍କ ସାଙ୍ଗରେ ସେ ବି ଧରିଥିଲା ଫୁଲମାଳ ନିକେତନର ଗଳାରେ ଲମ୍ବାଇ ଦେବାପାଇଁ ।

ନିକେତନର ଗୋଡ଼ ବଢିଗଲା ଯୋଷା ନିକଟକୁ ।

ଯୋଷାର ହାତ ଥରି ଉଠିଲା । ନିକେତନର ଆଖି ଛଳଛଳ ହୋଇ ଉଠିଲା—ଦୟାରେ, ମମତାରେ, ଅପଣାର କରିବାର ବିନୟରେ ।

ସେଦିନ ନିକେତନର ମସ୍ତକ ଛୋଇଥିଲା ଫୁଲମାଳ—ହୃଦୟକୁ ନୁହେଁ ।

ଫୁଲମାଳ ଛିଡ଼ିପଡ଼ିଲା ।

ନିକେତନ ଭାବୁଥିଲା—ଏବେ ବି ପ୍ରମାଣିତ ହେବାକୁ ବାକି ଅଛି—ଜଡ଼ରେ ଅଛି ଚେତନା । ପ୍ରମାଣ ହୋଇନାହିଁ । ପ୍ରମାଣ ସନ୍ଦେହ ଗର୍ଭରେ—

# ଦାବି

ବିଭୂଷଣ ଓ ଉତ୍ତମା ।

ଦୁହେଁ ଏକ ସାଙ୍ଗରେ ପଢନ୍ତି । ହଁ ଏକ ସଙ୍ଗରେ । କିଏ କାହାକୁ ପଢ଼ାଏ, କିଏ କାହାଠୁ ପଢ଼େ ଜଣାନାହିଁ ।

ମନେହୁଏ, ବିଭୂଷଣ ନଥିଲେ ଉତ୍ତମାର ପାଠ ହୁଅନ୍ତା ନାହିଁ କି ଉତ୍ତମା ନଥିଲେ ବିଭୂଷଣର ମନ ଲାଗନ୍ତା ନାହିଁ ।

ଦୁହେଁ କେତେ ଛଡ଼ା । କାହା ଘର କେଉଁଠି । ଏଠିକାର ସୂର୍ଯ୍ୟ ସେଠି ଉଠିବାକୁ କେତେ ଡ଼େରି କରୁଥିବେ କିଜାଣି । ତଥାପି ଯେମିତି ସେଠିକାର କିରଣ ଏ ଦେଶକୁ ଆଲୁଅ ଦିଏ ।

ମୁଣ୍ଡ ଉପରେ ଘନ ଅଧିର କାଳପୁରୁଷ ପରି ହୁରନ୍ତି ଭୀଷଣ ଅଥଚ କୃତ୍ତିକା ପୁଞ୍ଜପରି ଖୁବ୍ ଲଗା ଲଗା ହୋଇ ଆସନ୍ତି । ବିଭୂଷଣ ଭାବେ, ସେ ଉତ୍ତମାର ମନକଥା ବୁଝି ପାରୁଛି—ଆଉ ଉତ୍ତମା ଧରି ପାରୁଛି ବିଭୂଷଣର ମନଭାବ ।

ଗଙ୍ଗାର ଗଭୀର ଜଳ ପରି ଉତ୍ତମା—ଶାନ୍ତ ଅଥଚ କ୍ଷିପ୍ର । କାହାରିକି ଅପେକ୍ଷା ନାହିଁ ।

ବିଭୂଷଣ ଯୁବକ । ହଁ କୁହାଯାଇ ପାରେ । ଉତ୍ତମା ଯୁବତୀ । ଯୌବନର ଅଭିଜ୍ଞତା ବିଭୀଷଣକୁ ପ୍ରୌଢ କରି ପକେଇଛି । ଉତ୍ତମା ହୁଏତ ସରଳା—ଯୁବତୀ ହୋଇ ମଧ୍ୟ ବାଳିକା ।

ନିର୍ମଳ ? ହଁ ନିତାନ୍ତ ନିର୍ମଳ ସମ୍ପର୍କ—ପିଲାଙ୍କ ପରି । ବିଭୂଷଣ ଭାବିବ ଏଇ ବୋଧହୁଏ ଦେବତ୍ୱ । ଆଉ ଉତ୍ତମା ? ସେ ହୁଏତ

ଦେବତ୍ୱ, ମାନବତ୍ୱ କମ୍ବା ପଶୁତ୍ୱ ଭିତରୁ କେଉଁଠା ତା'ର କର୍ତ୍ତୃତ୍ୱ କରିବାରେ ତାର ଅବସର କଟିଯାଏ ।

ବିଭୂଷଣ କାବ୍ୟର ନାୟକ ଭଳି ସୁନ୍ଦର ନୁହେଁ । ଅଭିନୟର ଅର୍ଜ୍ଜୁନ ଭଳି ସୁସ୍ଥ ନୁହେଁ । କମ୍ବା ରାମାୟଣର ରାମଚନ୍ଦ୍ର ଭଳି କମନୀୟ ନୁହେଁ । ବରଂ ଅସୁନ୍ଦର ।

ଆଉ ଉତ୍ତମା ! ସୌନ୍ଦର୍ଯ୍ୟର ଲାଳିତ୍ୟରେ ବାର୍ନିସ କଲାଭଳି ଚକ୍‌ଚକଣ । ମେଘମୁକ୍ତ ଆକାଶର ପରି ପବିତ୍ର ।

ଅସାମଞ୍ଜସ୍ୟ—ଅସମ୍ଭବ । ତାର ଭିତରେ ସମ୍ଭାବ୍ୟକୁ ନେଇ ଆକାଶର ସୌଧ ଗଢ଼ା ଚାଲିଥାଏ ।

ବିଭୂଷଣ ହୁଏତ ଭାବେ—ଜୀବନ ସତ୍ୟ—ଜୀବନ ସୁନ୍ଦର ।

ଉତ୍ତମାର ଭାବନା ତାର ସହ ମତ ଜଣାଏ—ଜୀବନ ସ୍ୱପ୍ନ ନୁହେଁ ।

ସେଦିନ ସକାଳୁ ଶୁକ୍ରତାରାଟା ଆକାଶର ପୂର୍ବ ପଟେ ଉଠି ଲିଭି ଲିଭି ଲିଭିଯାଇଛି । ବିଭୂଷଣ ଆସି ବହି ଖୋଲି ବସିଲା । ଉତ୍ତମାର ହେଇଗଲା ଟିକଏ ଡେରି । ଉତ୍ତମା ଆସି ତାର ଡେରି କରିବାର ଅପରାଧକୁ ଏଡ଼ିବା ପାଇଁ କ'ଣ କହିଲା—ଆପଣ ଛବି ଦେଖିବାକୁ ଖୁବ୍ ଭଲ ପାଆନ୍ତି ବିଭୂଷଣବାବୁ ?

ଛବି ! ବିଭୂଷଣ ବୁଝିପାରୁଥିଲା । "ହଁ—ତେବେ ବିଶେଷ ନୁହେଁ । ଭଲ ଛବି ଥିଲେ ଯାଏ—ଆପଣ ?"

"ନା—ଠିକ୍ ଆପଣଙ୍କ ପରି । ମନ ହୁଏ । କିନ୍ତୁ କାହାସାଙ୍ଗେ ଯିବି ?"

"କାହିଁକି—ଆପଣ କହିବେ ତ ମୁଁ ଆସିବି ।"

ଉତ୍ତମା କୃତାର୍ଥ ହୋଇଯାଇ ଥିଲା । ବିଭୂଷଣକୁ ଲାଗିଲା ଏମିତ।
ମନେ ହେଲା, ତାର ଆଜ ଜୀବନା ଭିତରେ ସଂଯୋଜକ ଛନ୍ଦଟା
ସରଳ ରେଖା ପରି ସିଧା ସଳଖ—କୁଟୀଳତା ନାହିଁ ।

ସେଦିନ କ'ଣ ଭଲ ଛବିଟାଏ ଥାଏ । ବିଭୂଷଣ ପଚାରିଲା—
ଯିବେ ।

ଉତ୍ତମା ଉତ୍ତର ଦେଇ ନଥିଲା । ବିଭୂଷଣ ଭାବିଲା—ନୀରବ-
ତାର ସମ୍ମତି ଅଛି ।

ବିଭୂଷଣ ଅସିଲା ସନ୍ଧ୍ୟା ପୂର୍ବରୁ । ସେ ପଟରେ ଶୁକ୍ଳ ତୃତୀୟାର
ବଙ୍କା ଜହ୍ନ ଟିଏ କେଉଁ କୁଳବଧୂ ଅଧରର ଲଜ୍ଜାରୁ ଛୁଇଁକ
ଦେଉଚଢ ଆଜ ।

ଉତ୍ତମା ପ୍ରସ୍ତୁତ ହୋଇ ନଥିଲା ।

ଯିବ ନାହିଁ ? ବିଭୂଷଣ ପଚାରିଲା ।

ମୋ ଦେହ ଭଲ ନାହିଁ ବିଭୂଷଣବାବୁ ।

ବିଭୂଷଣ ଧୀରେ ଧୀରେ ଫେରି ଆସିଲା ।

ଶ୍ୟାମଳା ଆକାଶ ମୁଖରୁ ଆବରଣ ଖୋଲି ଯାଇଥିଲା । ତାରା
ଗୁଡ଼ାକ ସ୍ପଷ୍ଟ ପରିଷ୍କାର ।

ତହିଁ ଆରଦିନ ସକାଳେ ଉତ୍ତମା ଖଣ୍ଡେ ଚିଠ ମାଧ ପାଇଥିଲା—

"—ମୁଁ ତମର ବିଶ୍ୱାସ ହରାଇଛି । ଆଜ ତମ ନିକଟରେ
ରହିବାର ଦାବି ମୋର ନାହିଁ ।—ବିଭୂଷଣ ।"

ସେତିକି ।

# କବି

କବି—କଳାକାର—ସ୍ରଷ୍ଟା ।

ସେ ହସେ । ହଁ ସେ କବି, କଳାକାର, ସ୍ରଷ୍ଟା । ସୃଷ୍ଟି କି ଗୁଣ୍ଠି ହିଁ ସେଠି ତ ତା'ର କବିତା । କେତେ ଆଗରୁ ଲେଖିସାରିଛି କିଏ । ତାର ଗନ୍ଧକୁ ଚୂରି ଚୂରି ଚୂନା କରିଦିଏ କିଏ—ମିଶେଇଦିଏ ଧୂଳି ସାଙ୍ଗରେ । ସେ ହସେ । ସେ କ'ଣ କବି, ସେ କ'ଣ କଳାକାର, ସେ କ'ଣ ସ୍ରଷ୍ଟା ?

ଲୋକେ ତାର ଲେଖା ପଢ଼ନ୍ତି । ପଢି ଆନନ୍ଦ ପାଆନ୍ତି । କିଏ କାନ୍ଦେ । ଆଖିରୁ ଲୁହ ଗଡ଼ି ପଡ଼େ । ସେ ବି ଏକ ପ୍ରକାର ବିନୋଦନ ।

ବାଃ କେଡ଼େ ଚମତ୍କାର !—କିଏ କହେ । ପ୍ରଶଂସା କରି ସେ ପାଏ ଫୁର୍ତ୍ତି ।

ଆଃ—ବଡ଼ କରୁଣ ।—କିଏ ସହାନୁଭୂତି କରେ । କିନ୍ତୁ କାହାକୁ ? ଲେଖକକୁ—ନା, ଲେଖାର କଳ୍ପିତ ନାୟକ ନାୟିକାଙ୍କୁ ?

କବି ପୁଣି ହସେ । ଶୁଖିଲା ହସ । ସେ ହସ ବଡ଼ କଠୋର—ଅଭିଶାପ ଭଳି । ସେ ହସ ମଣିଷର ହୃଦୟକୁ ପଥର କରିଦେବ ଯିମିତି ।

କି ବିଶ୍ୱାସ ଘାତକତା ! କବି ଭାବେ ।

ରାତି ରାତି ବିତିଯାଏ । ନିଦ ହୁଏ ନାହିଁ । ପ୍ରେମ ଫୁଲ ଫୁଲି ଉଠେ । ଦେହରେ ଜର । ଭିତରେ ଥର । କବି ଉଠି ଲେଖି ବସେ,

ତଥାପି । ହୃଦୟକୁ ଚିପୁଡ଼ି ଦେଇ ନିଃଶେଷ କରିଦିଏ । ପୁଣି ହୃଦୟ ଭରି ଆସେ । ବେଦନାର ଝର ସେ । ଯେତେ ଦେଲେ ବି ସରେ ନାହିଁ ।

କିନ୍ତୁ ସେ ଦୁଃଖ ତା'ର କେହି ବୁଝେ ନାହିଁ । କବି ନିଜେ ଦୀପର ବଳିତା ଭଳି ଜଳି ଜଳି ଯାହା ଦେଇଯାଏ ତାର ଆଲୋକ ପାଆନ୍ତି ସମସ୍ତେ—କିନ୍ତୁ ବଳିତାର ଜ୍ୱଳନ କେହି ଲକ୍ଷ କରେନାହିଁ ।

କବିର ମନେ ହୁଏ—ସେ ରାସ୍ତା କଡ଼ରେ ଠିଆ ହୋଇଛି । ଏକେ ଏକେ ସମସ୍ତେ ଚାଲି ଯାଉଛନ୍ତି—ଅଣିମା, ମାନସୀ, ସବିତା, ସୁଧା, ଶୀଳା ସମସ୍ତେ । ସମସ୍ତେ ଚାଲି ଯାଇଛନ୍ତି । କାହାରି ଆଖିରେ ସେ ପଡ଼ିନାହିଁ । ସମସ୍ତଙ୍କୁ ସେ ଆଶା କରି ଚାହିଁଛି । କେହି ତାକୁ ମାଳା ଦେଇ ନାହାନ୍ତି । କାହାରିଠାରୁ ସେ ମାଳା ମୂଲେଇ ପାରିନାହିଁ । କବି ଦରିଦ୍ର—କବି ନିଃସ୍ୱ ସେ ମୂଲ କରିପାରେ ନାହିଁ । ପୁଣି ଭାବେ—କବିତା ଦେଇ କଣ ଫୁଲର ମୂଲ କରି ହବ ? କିନ୍ତୁ କବିତା ବଦଳରେ ସେ ଫୁଲ ତାକୁ ଦେବ କିଏ ?

ଫୁଲ ବିକ ହୋଇ ଚାଲିଯାଏ ଆଦର ଦରରେ । ବଡ଼ ଲୋକ ଧନୀ ସୌଦାଗର ଗଳାରେ ସେ ଫୁଲର ହାର ଦୋଳେ । ବେଶ ଚମତ୍କାର ଦିଶେ ତ । ଅଣିମା, ମାନସୀ, ସବିତା ସମସ୍ତେ ଶୋଭା ପାଆନ୍ତି ଧନୀର ପ୍ରଶସ୍ତ ହୃଦୟରେ ।

କିନ୍ତୁ ନୀର !

ସେ ତ ଫୁଲର ମାଳ ଆଣି ନଥିଲା । ତାର ପ୍ରଣୟ ମଞ୍ଜୁଳ ହାର ନୁହେଁ ଫୁଲ ପରି । ସେଥିପାଇଁ—ସେଥିପାଇଁ—

ମୀରା ବି ଗୁଲିଗଲା । କବିର ନିଶ୍ୱାସ ବାଜିଥିଲେ ହୁଏତ ତାର ପ୍ରଶାନ୍ତି ଝାଉଁଳି ଯାଇଥାନ୍ତା । ମରୁଭୂମିର ମର୍ମରେ ଧାରା ଶୁଖି ଯାଇଥାନ୍ତା ।

କିନ୍ତୁ ଭୁଲିପାରେ ନାହିଁ କବି । ମୀରା ଯେଉଁ ଭାବର ପରିବେଶ ହେଇ ଯାଇଛି କବି ତାକୁଇ ବସି ଗୁନ୍ଥେ । ପାରେ ନାହିଁ । ଭାବନାର ଖିଅ ଛିଣ୍ଡିଯାଏ । ଆଖି ପାଣିରେ ହାର ଗୁନ୍ଥେ । ସେ ପୁଣି ଶୁଖିଯାଏ । କେହି ନଦେଖିବା ଆଗରୁ ଉଡିଯାଏ କୁଆଡ଼େ । କବିତା ଲେଖା ଆଉ ନାହିଁ ।

ଶୁଭେନ୍ଦୁ ଓ ମୀରା । ଗୋଟାଏ ନିବିଡ଼ତା ଥିଲା ଦୁହିଙ୍କ ଭିତରେ । କବି କ'ଣ ମୀରାକୁ ସେଭଳି ଜଡ଼ାଇ ରଖି ପାରିଥାନ୍ତା ! କବି ତ ସବୁଦିନେ ଛଡ଼ା ଛଡ଼ା—ଖାପ ଛଡ଼ା—ବଣ ପଡା । କବି ମୀରାର ସୁଖରେ ସୁଖୀ ହେବାକୁ ଚେଷ୍ଟା କରେ ।

ମୀରା କହିଯାଏ—କବି, ମୁଁ ସତ, ମୋର ପ୍ରଶାନ୍ତି ସତ—ତମର ସେ ମିଛ କଳ୍ପନାର ଦୁନିଆକୁ ଯାଆନ୍ତି କମିତ ।

କବି ନିଜକୁ ଗୁହିଁ ଦେଖେ, ସତ ସତ ସେ ମିଛ ହେଇ-ଯାଇଛି । ଏ ସଂସାରରେ—ଏ ସତ ସଂସାରରେ ସେ ମିଛ । କବିତା ଭଳି ମିଛ—କବିତାର ନାୟକ ଭଳି ମିଛ—କଳ୍ପନା ।

ସେ କୋହ ଗୁପି ରଖେ । କିନ୍ତୁ କାନ୍ଦଣାର ସ୍ୱର ତାକୁ ବିଦ୍ରୂପ କରେ । କରୁଣ ରସର କବିତା ହାସ୍ୟମୟ ହୋଇ ଫୁଟି ଉଠେ । ଲୁଚେଇ ନହେବା ଜିନିସକୁ ଲୁଚେଇ ବସିଲେ ସେ ଯେମିତ କଦାକାର ହୋଇ ଦେଖାଦିଏ ସେମିତ ।

କିନ୍ତୁ ଏଇ ମିଛ ଭିତରେ କ'ଣ ସତ୍ୟର ଆଭାସ ନାହିଁ ? କବି ବିଗୁରେ ।

ମରଣ ଅସି କହେ—ହଁ—ସେ ପର୍ ମୁଇଁ ।

କବି ଗୁହେଁ—ଏ କଏ ! ଏ ତ ତାର୍ ଭାବ, ତାର ଭାଷାରେ କଥା କହୁଛି !

ତା' ହାତରେ ବରଣମାଳା—ସେଇ ତ ମରଣ ।

କବି ହେଲା କରେନାହିଁ । କେତେ ଆପଣାର ପରି ଆସିଛି ସେ । ତାକୁ ହତାଦର କରିବ କମିତ ।

କବିର ଦୁଃଖ ନାହିଁ । ଯଉଁ ଦୁନିଆକୁ ସେ ଭଲ ପାଇଥିଲା ବୋଲି, ଆଜ ତାକୁ ବାଧ ହୋଇ ଛାଡ଼ିଯିବାକୁ ହେଉଛି ସେ ଦୁଃଖ କରିବ କ ନାହିଁ ଠିକ୍ ବୁଝି ପାରୁ ନଥିଲା । ଆଗରେ ଆଉ ଏକ ଦୁନିଆ—ତାର କବିତା ଭଲ ତ ସେ । ମିଛ ବି ହୋଇପାରେ । କ'ଣ ସତ ନାହିଁ ସେଠି ?

ଅଣାକରେ, ଶେଷ ବେଳରେ ଥରେ ମୀରା ଅସନ୍ତା ।

ମୀରା ଆସେ ।

କବି ପଚାରେ—ମୀରା ତମେ ମୋତେ ଭଲ ପାଅ ?

କବି ଭାବେ—ମୀରା ହଁ କହିବ । ନାଁ କହିପାରିବ ନାହିଁ । ମନରେ ଯା ଥାଉ—କଥାରେ ସେ ନା କହିପାରିବ ନାହିଁ । ଆଃ—ସେତିକ ଶୁଣି ସେ ନିଶ୍ଚିନ୍ତରେ ମରି ପାରିବ । ସେ ତ ଆଉ କିଛି ଚାହିଁନ ମୀରାଠୁ । ତାର କବିତା ତ ଆଉ କିଛି ମାଗିନାହିଁ ତାଠୁଁ । ଜୀବନରେ କବି ସମସ୍ତଙ୍କୁ ଭଲ ପାଇଛି—ଯାହାକୁ ଯେମିତ ଭଲ ପାଇବାର କଥା, ଯେତିକ ଭଲ ପାଇବାର କଥା, ସେତିକ, ସିମିତ । କିନ୍ତୁ, ଅବଶୋଷ, ଦୁଃଖ, ଖେଦ, ତାକୁ କେହି ଭଲ ପାଇନାହାନ୍ତି ପରିବର୍ତ୍ତିରେ । ସେଇ ଦୁଃଖକୁ ଘେନି ସେ କ'ଣ ମରିପାରିବ !

"କବି, ତମର ଲେଖାକୁ ମୁଁ ବଡ଼ ଭଲ ପାଏ ।"

କବି ଭାବେ—କବି ଆଉ କବିତା କ'ଣ ଦୁଇ ? ସୃଷ୍ଟି ଆଉ ସ୍ରଷ୍ଟା କ'ଣ ଏକ ନୁହେଁ ?

କବି କହେ—"ମୋର ଲେଖା ମୁଁ ଦୁନିଆକୁ ଦେଇଯାଇଛି—ଏକା ତମକୁ ନୁହେଁ । କିନ୍ତୁ ମୋତେ ମୁଁ କାହା ହାତରେ ଦେଇଯିବି ?"

ଶୁଭେନ୍ଦୁ ଆସି ଡାକନିଏ ମୀରାକୁ—ଡେରି ହେଇଯାଉଛି ।

ସେ ଯେମିତି ଜବାବ୍ ଦେଇଯାଏ—ଯିଏ ଦୁଃଖରେ ବି ଦୁଇ କଳି ହସ ଭରି ଦୁନିଆ ଉପରେ ସିନା କାଢି ଚାଲିଯାଏ ତାଙ୍କୁ ପଚାର ।

କବି ପଚାରେ—ସେ କ'ଣ କେବେ ହସିନାହିଁ ? ଖାଲି କାନ୍ଦିଛି ।

ମୁହଁର ସେଇ ୫୦ ବର୍ଷ ଉପରେ ସବୁ ଶୁଖିଲା ହସ ଝିଙ୍କିଏ—ଶେଷ ହସ ।

କବି ମରିଛି—କବିତା ମରି ନାହିଁ ।

ଦୁଃଖୀ ଯାଇଛି—ଦୁଃଖ ସରିନାହିଁ ।

# ଜାନୁଆରୀ ଛବିଶ

ସ୍ନେହର—

କାଲି ଜାନୁଆରୀ ଛବିଶ । ଭାରତ ଅଗରେ ସେଇ ଗୋଟାଏ ପ୍ରଶ୍ନ—ସେ ମରିବ କି ବଞ୍ଚିବ । ଆଉ ମୋର ?

ମୁଁ ଭାରତରୁ ବାହାର । ଲଜ୍ଜା ବୋଧ ହେଉଛି । ଆଜି ସେଥି-ପାଇଁ ସ୍ଥିର କଲି—ଏ କଳଙ୍କ ମୋତେ ପୋଛି ଦେବାକୁ ହିଁ ହେବ । ଏ କାଳି କେବଳ ମଣିଷର ରକ୍ତରେ, ଅପଣା ଲହୁରେହିଁ ଲିଭି-ପାରେ ।

ସହବନ୍ଦୀମାନେ ସେ କୋଣରେ ବସି ପତାକା ତିଆରି କରୁ-ଛନ୍ତି । ଜେଲ୍‌ର କର୍ତ୍ତୃପକ୍ଷଙ୍କୁ ଲୁଚାଇ । ଜାଣିଲେ ସେ ବାଧାଦେବେ । ପତାକା ତିଆରି ଆଉ ହେବନାହିଁ । ପତାକା ତିଆରି କରିବା ବେଆଇନ । ଜେଲ୍ ନିୟମର ବାହାରେ । ସେଥିପାଇଁ ଲୁଚି ଛପି କାମ ଚାଲିଛି । ଏ ଲୁଚି ଛପି ପତାକା ତିଆରିକି ବେଆଇନ— ସତ୍ୟାଗ୍ରହୀ ପକ୍ଷରେ । ଗାନ୍ଧିଙ୍କ ନୀତିକୁ ଯେଉଁମାନେ ନିକଟରେ ତଉଲି ବାଟ ଚାଲୁଛନ୍ତି, ସେମାନେ ଏକଥା ଶୁଣିଲେ ଜିଭ କାମୁଡ଼ି ପକାଇବେ—ପାପ ! ମୁଁ ବି ଭାବୁଛି ସେହି କଥା । ସତ୍ୟାଗ୍ରହ ଭଳିଆ ଖୋଲା ବସ୍ତୁବରେ ପୁଣି ଲୁଚି ଚୋରି କାହିଁକି ? କିନ୍ତୁ ଯେତେ-ବେଳେ ଦେଖୁଛି, ପରାଧୀନ ଦେଶରେ ବଞ୍ଚି ରହିବାଟା ଯେ ମିଥ୍ୟା-ଗ୍ରହ, ସେତେବେଳେ ଏ ସାମାନ୍ୟ କୌଶଳଟାକୁ ପାପ ବୋଲି କହିବାକୁ ମୋର ଅନ୍ତତଃ ସାହସ ହେଉନାହିଁ । ମିଛର ଆଶ୍ରୟ ନନେଇ ଲୁଚି ଛପାକୁ ପ୍ରଶ୍ରୟ ନଦେଇ ଏଠି ଦଣ୍ଡେ ବି ବଞ୍ଚି ହେଉ

ନାହିଁ । ଏ ଯୁକ୍ତି ସତ୍ତ୍ୱେ ମନ ବିଦ୍ରୋହ କରି ଉଠୁଛି—ନାଁ ଏ ନ୍ୟାଯ୍ୟ ଯୁଦ୍ଧରେ ଅନ୍ୟାୟର ସ୍ଥାନ ନାହିଁ । ଏ ପ୍ରକୃତ ପାପ । ପୁଣି ଡର ହେଉଚି, ଏଠା ଲୁଚି ଛପା କରିବାର ପାପକୁ ଭୟ, ନା ମରଣକୁ ଭୟ ।

ତା ଛଡା ମୋର ଏ ଦେଶ ପ୍ରୀତି, ମୋର ଏ କାରାବରଣ ସବୁ କ'ଣ ସତ୍ୟ ? ତାହେଲେ ଆଜି ମୋତେ ଏ ଶଠି ଲେଖିବାକୁ ପଡ଼ି ନଥାନ୍ତା ତୋ ପାଖକୁ—

କାଲି ସକାଳ ହେବାକୁ ଆଉ କେତେ ଘଣ୍ଟା ରହିଲା । ଏ ଲମ୍ବା ଗୁହାଳ ଭିତରେ ଗୋଟେ ଗୋଟେ ଖଟିଆ ପକାଇ ମଣିଷ ଗୁଡ଼ାକ ଗୋରୁ ଭଳି ଶୋଇଛନ୍ତି । ସମସ୍ତେ ରାଜବନ୍ଦୀ । କାଲିକି ସେମାନେ ଭୁଲି ଯାଇଛନ୍ତି । ଆହୁରି ଏମିତି କେତେ ଆଜି 'କାଲି' ହୋଇଯିବ । ସେ ଚିନ୍ତା କେହି କରୁନାହିଁ । କେବେ ଫିରୁ ବୋଲି ଭାବି ଭାବି ସମସ୍ତେ ଶୋଇଛନ୍ତି । କିଏ ଶୋଇ ଶୋଇ ଘରର ସପନ ଦେଖୁଛି । ସପନରେ ପ୍ରିୟ ଲୋକଙ୍କୁ ଦେଖିବାକୁ ମୁଁ ଘୃଣା କରେ । ମନୁଷ୍ୟ ନିଜକୁ ଭୁଲାଇ ବହଲାଇ ସତ୍ୟକୁଇ ସବୁବେଳେ ଏଡ଼ି ଚାଲିଥାଏ ଦିନ ରାତି—ନିଦ ଜାଗ୍ରତରେ ।

ଲୁଆଡ଼ିରଠା କାନ୍ଥ ସେ ପଟେ ନାଲିମରା ଯୋଡାମଡ଼ା ଗୋଇଠିକି ଠକ୍ ଠକ୍ ବାଡ଼େଇ ଚାଲିଯାଉଛି । ରାତିର ଲମ୍ବ ଓସାରକୁ କଦମ ପଦକାରେ ମାପିଲା ପରି । ସେ ଆମକୁ ଜଗିଛି ମନେ ମନେ । କାଲି ଯେତେବେଳେ ଏଇ ଠାଙ୍ଗର ଭୂଇଁ ଉପରେ ପତାକା ଉଡିବ—

ହୁଁ କାଲି । କାଲି ୨୬ ତାରିଖ ଜାନୁୟାରୀ । କେତେବର୍ଷ ତଳେ ଆଜି ଦିନରେ କଂଗ୍ରେସ ସ୍ୱାଧୀନତା ଘୋଷଣା କରିଥିଲା ।

ସେଠି କଏଣ୍ଡ ସଙ୍ଗୀ ରାଜବନ୍ଦୀ ନିଦରେ ହାଇଲି ଖାଇ ଉଠିଲେ । ଭୟ୍ନ । ମଣିଷ ଶୋଇଥିଲେ ଭୟ୍ନ କରେ । ତେଇଁ ଲା ମଣିଷ ଡ଼ରେ ନାହିଁ । ଆମେ ଏ ଦେଶର ଲୋକେ ଶୋଇଛୁ—ସେଥିପାଇଁ ଭୟ୍ନ । ସ୍ୱାଧୀନତାରେ ଶୋଇଲା ପୁଅର ଭାଗ ନାହିଁ । ମୁଁ ସେଥିପାଇଁ ବୋଧ-ହୁଏ ଏ ରାତରେ ବି ନଶୋଇ ଚିଠି ଲେଖୁଛି ତୋ ପାଖକୁ । ହସ ମାଡୁଛି । ଏମିତ ବେଳରେ ହସ ବି ମାଡେ । ହଁ ମାଡେ । ମଣିଷ ନିଜେ ଯେତେବେଳେ ନିଜକୁ ଅଠା କରିପାରେ ସେତେବେଳେ ସେ ସବୁଠାରୁ ବେଶୀ ଜାଗ୍ରତ ।

ଗଲା ବର୍ଷ ଏଇ ଦିନରେ ପତାକା ଉଡ଼ିଥିଲା । ଜେଲ୍‌ରେ ବି ଝିସ ଜେଲ୍‌ରେ ଜାତୀୟ ପତାକା ଉଡାଇବା ମହାପାପ । ଗଲାଥର ଲାଠି ଚାଲିଥିଲା । ଗୁଳି ଚାଲୁ ଚାଲୁ ରହିଗଲା ।

ସାଥୀ ବନ୍ଦୀମାନେ ହସୁଛନ୍ତି । ଜାତୀୟ ପତାକା ତିଆରି କରୁ କରୁ ବି ହସୁଛନ୍ତି । ଏତେବଡ ଦାୟିତ୍ୱ କାମ ମୁଣ୍ଡେଇ, ଏତେବଡ ପଦାର୍ଥ ପାଖରେ ଥାଇ ବି ହସ ମାଡୁଛି । ନ ହସିବେ କାହିଁକି ! ଏଇମାନେଇ ତ କାଲି ସକାଳେ ତା'ର ପାଇଁ ମୁଣ୍ଡ ଦେଖେଇ ଦେବେ, ଛାତି ପତେଇ ଦେବେ ଲାଠି ଆଗରେ—ଗୁଳି ମୁହଁରେ । ଯିଏ କୌଣସି କାମ ପାଇଁ ଜୀବନ ଦେବାକୁ ଯାଏ, ସେ କାନ୍ଦିଲେ କଦାପି ମରିପାରେ ନାହିଁ । ଏ ମରଣ ମରିବାର ହେଲେ ହସି ହସିଇ ମରିବାକୁ ହେବ ।

ମୁଁ ହସି ପାରୁନାହିଁ କାହିଁକି ? ତୁ ବୋଧେ ଜାଣି ପାରିଥିବୁ । ସେଥିପାଇଁ ମୋତେ ଅନ୍ତୁର ଧିକ୍‌କାର କରିବାକୁ କୁଣ୍ଠିତ ହେବୁନି ବୋଧହୁଏ ।

କିନ୍ତୁ ମୁଁ ହସି ନପାରିବ କଥା ନୁହେଁ । ହେଇଟି ଜେଲରୁ ସାହେବ ରାଉଣ୍ଡରେ ଆସିଚନ୍ତି । ମୁଁ ଗଳା ଖଙ୍କାର ମାରିଲି । ସାଥି-ମାନେ ପତାକା ଲୁଚାଇ ଦେଇ ଶୋଇ ପଡ଼ିଲେ—ଶୋଇବାର ଛଳ ।

ମଣିଷ ଏମିତି ଛଳ ଚାଲୁଛି । ଅନ୍ୟକୁ ନୁହେଁ, ଆପଣାକୁ । ଆପଣା ଜୀବନକୁ । ଆଜି ଏଇ ସାଥିମାନଙ୍କ ପରି ଆପଣା ମରଣକୁ ବି । କାଲି ଏମାନେ ମରିବେ । ମରଣକୁ ଡାକିବାକୁ ଯାଉଛନ୍ତି । ଯଦି କେହି ପଚାରିବାକୁ ଆସୁଛି—ତମେ କ'ଣ ମରିବ ? ସେ ନାହିଁ କରୁଚନ୍ତି—ନା ଆମେ ତ କିଛି ଜାଣୁ ନାହିଁ । ଚମତ୍କାର । ଜେଲରେ ଚାଲିଗଲା ଦେଖିବାର ଛଳନା କରି । ଏ ଦେଶର ସରକାର ବି ସେମିତି ଶାସନ କରୁଥିବାର ଛଳନା କରେ । ବୋଧହୁଏ ଭଗବାନ ସବୁ ଦେଖୁଚନ୍ତି, ସବୁ କରୁଛନ୍ତି ବୋଲି ଛଳନା କରନ୍ତି । ତା ହୋଇ ନଥିଲେ ଦୁନିଆରେ ସବଳର ଅନ୍ୟାୟ ଅତ୍ୟାଚାର ନଥାନ୍ତା ।

ସେ କୋଣରେ ଗୋଟିଏ ବିରହୀ ବନ୍ଦୀ । ଆଜି ଚିଠି ପାଇଛି ନବ ପରିଣୀତା ସ୍ତ୍ରୀ ପାଖରୁ । ବିବାହର ୭ଦିନ ଭିତରେ ଧରି ନେଇ ଆସିଲେ ଦୁଇବର୍ଷ ବିତି ଗଲାଣି । ଅଟକ ବନ୍ଦୀ । କେବେ ଯିବ ଠିକ୍ ନାହିଁ । ତାକୁ ନିଦ ନାହିଁ ରାତିରେ । ସେ ଚିଠି ଖଣ୍ଡି ସେ ଉଠି ବାରବାର ଦେଖୁଛି । ଅନ୍ଧାରରେ ପଢି ପାରୁନାହିଁ । ଆଲୁଅ ଆଣିଲେ କିଏ କାଳେ ଦେଖିବ । ତଥାପି ସେ ଚିଠିକି ଚାହୁଁଛି ।

ତୋର ଚିଠି ମୁଁ ଆଜି ଚିରି ପକାଇଲି । କାରଣ ତାକୁ ଆଉ ରଖିବାର ପ୍ରୟୋଜନ ନାହିଁ । ମୁଁ ତାକୁ ଲୁଚାଇ ରଖିଥିଲି । କାରଣ ନିଷ୍ଠୁରତାର ନିଦର୍ଶନକୁ ଲୁଚାଇ ରଖି ମଣିଷ ଟିକିଏ ଚାଣ ହୁଏ । ମଣିଷ ଆପଣାର ଭଲ ପାଇବା ଲୋକର ଦାନକୁ ଲୁଚାଇ ରଖିଲେ କେମିତି ଦୁର୍ବଳ ଅନୁଭବ କରେ । ସେ ଦୁର୍ବଳତାରେ ଗୋଟେ ଆନନ୍ଦ ଥାଏ । ସେଥିପାଇଁ ସେ ତାକୁ ଦୁର୍ବଳତା କହେ ନାହିଁ ।

ଏହି ସାଙ୍ଗ ବନ୍ଦୀଙ୍କ ଭିତରୁ ଅନେକ ତାଙ୍କ ଜୀବନ କାହାଣୀ କହନ୍ତି—ବଡ଼ କରୁଣ ! ଅଧିକାଂଶଙ୍କର ବିରହ ବ୍ୟଥା । ଉଭୟ ଉଭୟଙ୍କୁ ଭଲ ପାଉଥିଲେ । ତା'ପରେ ଆସିଲା ବିଚ୍ଛେଦ । ସେଇ ଦୁଃଖୀ ସେଇ ବିରହ ତାଙ୍କୁ ଯେମିତି ପ୍ରାଣ ଦେଇଛି । ତାଙ୍କ ଭିତରେ ଜଣେ ସେଠି ପତାକା ଧରୁଛି । ମୋର ମନେ ଅଛି, ସେଦିନ ସେ କହିଲା—ମୋର ମରିବାକୁ ଡ଼ର ନାହିଁ । ମୁଁ ଶାନ୍ତିରେ ମରି ପାରିବି । ମୁଁ ପଚାରିଲି—କାରଣ ? ସେ ହସିଲା । କହିଲା—ଭାଇ, ଯାର ଜୀବନ ସାର୍ଥକ ହୋଇଥାଏ ତା ଜୀବନ ମୃତ୍ୟୁରେ ବି ବ୍ୟର୍ଥ ହୁଏ ନାହିଁ । କଥାଟାକୁ ମୁଁ ଭଲକରି ବୁଝିପାରିଲି ନାହିଁ ହଠାତ୍ କିନ୍ତୁ ଭାବି ଦେଖିଲି—ଠିକ୍ କହୁଛି ତ । ସେ ଭଲ ପାଇଛି—ଆଉ ଭଲ ପାଇବା ପାଉଛି ! ତାର ଜୀବନ ସାର୍ଥକ ହୋଇଯାଇଛି । ଆଉ ତାର ଅପୂର୍ଣ୍ଣ ରହିଛି କ'ଣ ? ସେ ମରି ନପାରିବ କାହିଁକି ?

କିନ୍ତୁ କେବେ କେଇ ଭଲ ପାଇବା ଦେଇ ଭଲ ପାଇବା ନ ପାଇବାର କଥା କହି ନାହିଁ ମୋ ଆଗେ । ଏମିତି ଲୋକ ଯେ ନଥିବେ ମୁଁ କହୁନାହିଁ । କିନ୍ତୁ ସେ କଥାଟା ବୋଧହୁଏ ଅନ୍ୟ କାହାର ଆଗରେ କହିବା ଭଲ ନୁହେଁ । ସେମାନେ ତାକୁ ଇଚ୍ଛାକରି ଯତ୍ନରେ ଲୁଚାଇ ରଖେ । ଭାଙ୍ଗୁଇ ସେ ଦୁର୍ବଳ ମୁହୂର୍ତ୍ତରେ କହି ପକାଏ । କହେ—ଆଉ କାହାକୁ କହିବୁ ନାହିଁ ।

ମୋର ଜୀବନୀ ମୁଁ "କାହାକୁ କହୁନାହିଁ ।" ଏ କଥାଟି ଯେ ପଢିବ ସେ ହୁଏତ ତାର ଆଭାସ ପାଇବ । ମୁଁ ଏ କଥାଟି ନ ଲେଖି-ଥିଲେ ଗୋଟେ ବଡ଼ ଅନ୍ୟାୟ କରିଥାନ୍ତି । ଦେଶଯାକ ଲୋକଙ୍କୁ ଛଳ ଠକ ଚାଲିଥାନ୍ତି । କାଲି ଘଣ୍ଟା ପହରନ୍ତନ ମୋତେ କିସ୍ମଳଙ୍କ ସହିତ ବୋଲି ଦେଶ ପୂଜା କରିଥାନ୍ତା । କିନ୍ତୁ ମୁଁ କ'ଣ କେବଳ ଦେଶ ପ୍ରେମପାଇଁ ମରିବାକୁ ତିଆରି ହୋଇଯାଇଛି ।

ସେ ପାଖ କଣ୍ଡେମ୍ କେଲରେ କଇଦୀ ପହରାଦାର ଏକ, ଦୁଇ, ତିନି ଗୃହ ଗଣି ଯାଉଛନ୍ତି ତାର ନିଜ କଇଦୀ ଭାଇଙ୍କୁ । ଏ ଲୀଳା ରାତିଯାକ ଚାଲିଛି । ପହରା ଦୁଇ ଘଣ୍ଟାରେ ଥରେ ବଦଳି ହୁଏ । ଏଥର ବଦଳରେ ଗୋଟିଏ ବଡ଼ ପାଟିଆ ପହରାଦାର ଉଠିଛି ।

ରାତି ଆଉ ବେଶୀ ନାହିଁ । ଫାସି ଆସାମୀ ଉଠି ଅନ୍ତିମ ସ୍ତବ ଆରମ୍ଭ କରିଦେଲେଣି । ଆଉ କେତେଟା ଦିନ ସେ ଅନ୍ତିମ ଗାଇବ; ଆଉ କେଉଁଟା ସକାଳ ତାର ପାହିବ ।

ପହରା ବାଲାଗଣ ବନ୍ଦନାକୁ ବୁଡ଼େଇ ପକଉଛି ପାଟିରେ । ଭଲ ଗଣି ଚାଲିଛି ଯେ । ନିଜ ମୃତ୍ୟୁକୁ ଯେ ଯମ ଗଣୁଛି ସେ କଥା ତାର ମନେ ନାହିଁ ।

ସମସ୍ତଙ୍କର ସକାଳ ତ ଗଣିତ ହୋଇ ରହିଛି । ଅଗଣିତ ଆଉ କାହାର କି ? ଏଇ ଫାସି ଆସାମୀ ପରି ସମସ୍ତେ ମରଣ ଦଣ୍ଡ ପାଇଁ ଦୁନିଆକୁ ଆସିଛନ୍ତି । ତଫାତ୍ ଏତିକି, ତାକୁ ବିଶ୍ୱାସ କରେଇ ଦିଆଯାଇଛି । ସେ ନିଶ୍ଚୟ ମରିବ । ତାର ଆଉ ଆପଣାକୁ ଛଳିବାର ବାଟ ନାହିଁ । କିନ୍ତୁ ସାଧାରଣ ମଣିଷ ପ୍ରତିମୁହୂର୍ତ୍ତରେ ଆପଣାକୁ ଛଳି ଚାଲିଥାଏ—ସେ ମରୁନାହିଁ । ମୋର ନିଜ କଥା । ଏଇ ଅଠର ବନ୍ଦୀଙ୍କ କଥା । କିଏ ଜାଣିଛି, କାଲି ପୁଣି ଆଉ ଥରେ ଆମର ସକାଳ ପାହିବ କି ନାହିଁ ।

ମୁଁ ଭାବୁଛି, ଯେ ନିର୍ଭୟ ଭାବରେ ଦେଶପାଇଁ ମରିପାରିବ— (ଜୀବନ ସାର୍ଥକ ହୋଇଛି ବୋଲି ଯେ ଦେଶ ପାଇଁ ମରୁଛି— ସେ ତ ଯେ କୌଣସି କଥା ପାଇଁ ବି ମରି ପାରେ—ଆଉ ମୋର ପରି ଯା ଜୀବନ ବ୍ୟର୍ଥ ହେଉଛି ସେ ତ କେବଳ ହୀନ, ଭୀରୁ ଭାବରେଇ ମରିବା ଛଡ଼ା ଆଉ ବାଟ ନାହିଁ ତାର—ତାର ସେଇ ଭୀରୁ ମରଣକୁ ଗୌରବାନ୍ୱିତ କରିବାର ସହଜ ଉପାୟ ସେ ଯଦି

ମୋଠୁ ଶିଖି ନଥାଏ ) କିନ୍ତୁ ଯେ ସଫଳତା ବିଫଳତା ନଜାଣି କେବଳ ଦେଶ ପାଇଁ ମରିବ—ସତେ ସେ କେତେ ବଡ଼ ମଣିଷ ନୁହେଁ ! ସେ ଦେବତା ।

ମୁଁ ଏ ଚିଠି ଲେଖୁଛି ଠିକ୍ ତୋତେ ନୁହେଁ । ବରଂ ମୋ ଦେଶକୁ ମୋତେ ଯେମିତି ସହୃଦ ବୋଲି ପୂଜା କରି ମୋ ଆତ୍ମାକୁ କେହି ଅଶାନ୍ତି ନ ଦିଅନ୍ତି, ମୁଁ ସେଥିପାଇଁ ଏ ଚିଠି ଲେଖୁଛି । ଏ ମୋର ଶେଷ ଚିଠି ।

ତୋ ଚିଠିଟା ଆଉ କେହି ଦେଖି ନାହାନ୍ତି । ତୁ ଯେ ଚିଠିଲେଖି ଦୟା କରିଚୁ ସେ ଦୟାଟା ବୁଝିବାପାଇଁ ନିର୍ଦ୍ଦୟ, ନିର୍ମମ ପୁଲିସ ବା ଜେଲ୍ ଅଫିସରଙ୍କ ହୃଦୟରେ ସେ ଭଳି ଅନୁଭୂତିର ବହି ବା ଅଭିଧାନ ରହିବା ଅସମ୍ଭବ । ସେଗୁଡ଼ାକ ସରକାରୀ ଯନ୍ତ୍ରର ଗୋଟାଏ ଗୋଟାଏ ଅଂଶ । କାଗଜ ତିଆରି କରିବା କଳ ବା ଟାଇପ କରିବା ଯନ୍ତ୍ର ଭଳି ସେମାନେ ଦେଖିଯାନ୍ତି—ପଢ଼ନ୍ତି ନାହିଁ । ସେଥିପାଇଁ ତୋ ଚିଠିର ସମାଧି ମୁଁ ଏଇଠି ଦେଉଛି ।

ରାତି ପାହି ଆସୁଛି । ଆଉ ଟିକିଏକେ ନମ୍ବର ବା ଏଇ ରାତି କଏଦୀ ନଁଆଉ ଖୋଲାଯିବ । ରାତିଯାକ ବନ୍ଦ ଥିଲେ । ସମସ୍ତେ ନିତ୍ୟ କର୍ମ ପାଇଁ ଦଉଡ଼ିବେ । ଗୋଟିଏ ଗୋଟିଏ ହୋଇ ଉଠିବା ଆରମ୍ଭ କଲେଣି । କେହି କେହି ଘର ଭିତରେ ଝାଡ଼ା ଫେରିବା ବି ଆରମ୍ଭ କରିଦେଲେଣି । ରାତିଯାକ ତ ହିସାବ ଚାଲିଥାଏ । ଜେଲଖାନାର ଏଇଟାଇ ନର୍କଭୋଗ । ଅବଶ୍ୟ ଏ ସବୁ ପାଇଁ ଘର ଭିତରେ ଗୋଟାଏ କଡ଼ରେ ପାଇଖାନା ହୋଇଚି । ଗନ୍ଧ ଆଉ ଲାଗୁନାହିଁ । ନାକର ସୂକ୍ଷ୍ମ ତନ୍ତୁଗୁଡ଼ାକ ବଧିଆ ପଡ଼ିଗଲାଣି । ମୁଁ ଭାବୁଚି, ନିର୍ବିକାର ହେବାର ସାଧନା ମାତ୍ର ଏ ।

ଆଜି ବେଳନାହିଁ ଲେଖିବାକୁ । ପତାକା କାମ ସରିଯାଇଛି । ମଲ୍ଲ ମଣିଷ ଉପରେ ଡଙ୍କା ପିବ ବୋଲି ନୂଆ ଲୁଗା କଣା ହେଲଣି ବ ଆଜି । ମୋ ଛାତି ଶିହରି ଉଠୁଛି । ବେଳେ ବେଳେ ବଞ୍ଚିବାକୁ ମନ ହେଉଛି । କାଲେ ତୋତେ ପାଇବି—ତୁ ମୋତେ ପୁଣି ଦିନେ ଭଲ ପାଇବୁ । ଛି, କି ଲଜ୍ଜାର କଥା ।

ଜଣେ ବସି ମୋହ ମୁଦ୍ଗର ଆରମ୍ଭ କଲେ—ଯାବତ୍ ବିତ୍ତୋପାର୍ଜନ ଶକ୍ତଃ । ଉପଦେଶ । ଉପଦେଶ । ସମସ୍ତେ ଖାଲି ଉପଦେଶ ଦେବାରେ ଲାଗିଛନ୍ତି । ମୋତେ ରାଗ ଲାଗେ ଉପଦେଶ ଶୁଣି । ଉପଦେଶ କେବଳ ଉପଦେଶ ହୋଇ ରହିବାରେ, ଶୁଆ ଭଳି କ'ଣ ଗାଇବାରେ ଉପଦେଶର ସାର୍ଥକତା ।

ତୋର ଉପଦେଶ କିନ୍ତୁ—ପାଇଲି । ସେଥିରୁ ବୁଝି ପଡୁଛି—ମୋ ଭିତରେ ଗଲତି ରହି ଯାଇଛି । ମଣିଷ ଭୁଲ କରି ଯାଉଥାଏ—ବେଶୀ ତାର ଅଜାଣତରେ । ସେ ଦୋଷକୁ ଦେଖେଇଦେବା ବନ୍ଧୁର କାମ । ତା'ହେଲେ ଯାଇଁ ସୁଧୁରିବାର ବାଟ ରହେନ୍ତା ।

ଯାହା ହେଉ । କଥା ଶେଷ ହୋଇ ଯାଉଛି । ତୋ' ଶଠି ମୋତେ ସେଇଆ କହୁଛି । ତାର ଅର୍ଥ ଆଜି କଷ୍ଟ ହେଉନାହିଁ ମୋ ପାଖରେ । ମୁଁ ତୋତେ ଗୁରୁଖଣ୍ଡ ଶଠିଦେଲି । ସେ ବୋଧହୁଏ ଅଧବାଟରେ ହଜିଗଲା । କାରଣ ଲକ୍ଷର ଠିକଣା ମୋତେ ଜଣାନାହିଁ ।

ସମୟ ବଡ଼ ଅଦମ୍ଯ । ଜୀବନ ବିପଦ ଭିତରେ । ଆଉ ତ କେବେ ଦେଖା ହେବନାହିଁ । ତୋର ଶେଷ କଥା କାନରେ ବାଜୁଛି । 'ଉଚ୍ଚ ଆଦର୍ଶ ରଖ ।' ଭାବୁଛି ମୋତେ 'ହୃଦକୁ ଠେଲି ଦେବାପାଇଁ ତା ଠାରୁ ବଡ଼ ଛଳନାମୟ ବାଣୀ ଆଉ କ'ଣ ହୋଇପାରେ ।

ବର୍ତ୍ତମାନ କେବଳ ଉର୍ଦ୍ଦୁ କବିଙ୍କର ସେ ଗୀତ ମନେପଡ଼ୁଛି— "ସିରଫ୍ ମିଟିଜାନେକୀ ହସରତ୍ ଅବ୍ ହମାରେ ଦିଲ୍‌ମେ ହୈ ।" କେବଳ ଗୋଟିଏ ଆକାଙ୍କ୍ଷା ଅଛି ମୋର ଆଜି ଶେଷ ହେଇଛି ଆପଣାକୁ ଶେଷ କରିଦେବା ।

ଏହାଠୁ ବଡ଼ ଆଦର୍ଶ ମୋ ପକ୍ଷରେ ଆଉ କ'ଣ ହେଇପାରେ । ଯିଏ ଜୀବନରେ କାହାରିଠୁ କେବେ ପ୍ରେମ ପାଇନାହିଁ, ଆଜି ସମସ୍ତଙ୍କ ସେବାରେ ଆପଣାକୁ ବିସର୍ଜନ ଦେଇ ମଉ ମାଟି ହେଇ- ଯିବାଠାରୁ ବଡ଼ କଥା କ'ଣ ଅଛି ? ଏଥିରେ ଆଉ 'ଭୁଲ୍' ହେବାର ବାଟ ନାହିଁ । ବୁଦ୍ଧି ବିଚାର କାମ କରିବାର ଆବଶ୍ୟକତା ନାହିଁ । 'ମନ ଆପଣା ବଶ'ରେ ରହିଯାଏ ଆପେ ଆପେ । ଏହାର 'ପରିଣାମ ମଧ୍ୟ ମନ୍ଦ' ନୁହେଁ । କାହାର କହିବା ବା ଲେଖିବାକୁ ଅପେକ୍ଷା କରେନାହିଁ । ବିଦାୟ ।

ଆଜି ବଡ଼ ଶୁଭଦିନ । ଜାନୁଆରୀ ୨୬ । ଆଜି ମରିପାରିଲେ ନିଜର ମୁକ୍ତି—ଦେଶର ବି ମୁକ୍ତି ।

# ତିନିବର୍ଷ ପରେ

ଅଗଷ୍ଟ ନଅ ତାରିଖ—୧୯୫୨ ସାଲ । କାମଦେବ ଅନେକ ରାତିରେ ଫେରିଲା । ବାପା ବୋଉ କଥାବାର୍ତ୍ତା ହେଉଥିଲେ । କାମଦେବ କାନ ପାରି ଶୁଣିଲା । ଜେଲ ହେଲା ବୋଲି ବାପୁନାହାନ୍ତି ତ !

ତା'ପରେ ଆସିଲା ଦଶ, ଏଗାର । ଗୋଟାଏ ପିଶାଚ ଯେମିତି ନାଚିଗଲା ଏ ଭାରତଭୂଇଁ ଉପରେ । ସେ ପିଶାଚକୁ ସାମନା କରିବା-ପାଇଁ ଯେଉଁମାନେ ଦଉଡ଼ି ଯାଇଥିଲେ ସେମାନଙ୍କ ଭିତରୁ କାମଦେବ ଜଣେ । କିନ୍ତୁ କାମଦେବର ରକତ ଭୂଇଁରେ ପଡ଼ିଲା ନାହିଁ । ମଧ୍ୟବିତ୍ତ ଶ୍ରେଣୀର ରକ୍ତ ତା ଦେହରେ ।-ପାଠ ପଢା ଇଂରାଜୀ ପଢା ରକ୍ତ—ସେତେ ଉଷୁମ ନୁହେଁ । ସେଥିରେ ଗୋଲାମି ମିଶିଛି କ'ଣ । ସେଥିପାଇଁ ସେ ପିଶାଚ ଖୋଜିଲା । ତାଜା ତଟକା ମୂଲିଆ ଚାଷୀର ରକତ—ମୂର୍ଖ ହୁଣ୍ଡ୍ରାଙ୍କ ରକତ । ମଲେ ଦେଶର ଅଶିକ୍ଷିତ, ମୂର୍ଖ, ଖରା ବରଷାରେ, ଶୀତ କାକରରେ ଯାହାଙ୍କ ଦେହ ତାଜା ଅଛି—ସେଇ । ରକତ ଗଲା ତାଙ୍କର ।

ବାପା ବୋଉ ସେଦିନ ବସି କ'ଣ କଥାଭାଷା ହେଉଥିଲେ ତାର ମନେ ନାହିଁ ।

କାମଦେବ ଜେଲ୍‌ରେ । ଡେଟିନିଉ । ତାର 'ମାନ ଖାତିର ବି ଅଛି । ସେ ଇଂରାଜୀ ପଢିଛି ବୋଲି ପରା ! ଆଉ ଯାହାଙ୍କ ପାଇଁ ସେ ଲଢ଼ୁଛି ଦରକାର ହେଲେ କାଲି ପୁଣି ତାଙ୍କର ଗଳା ଚିପିବାକୁ ସେ

ଡ଼ରିଯିବ ନାହିଁ । ତା ପାଠ ତାଙ୍କୁ ମଣିଷ କରୁଚି ସେମିତି । ସେ ପାଠର ଛାତି ଭିତର ଶକ୍ତି—ଭିତରେ ବିଶ୍ୱାସଘାତକ । କାମଦେବ ସେ ନିୟମରୁ ବାହାର ହୋଇପାରେ । ସେଇଠା ବ୍ୟତିକ୍ରମ ।

କାମଦେବ କିନ୍ତୁ ଗୋଟାଏ କଥା ବୋଝିବୋଝି ଭାବୁଥିଲା— ତା'ର ଆଗରେ ଏତେଲୋକ ମରିଗଲେ । ସେ କାହିଁକି ନ ମଲା ? ସେ କାହିଁକି ମରି ନ ପାରିଲା ?

ହଁ, ପୁଲିସ ତାଙ୍କୁ ଆଗ ବନ୍ଦୀ କରିନେଲେ । ତାପରେ ଚଳେ-ଇଲେ ନିର୍ବାଦ ଅବୁଝା ଲୋକଗୁଡ଼ିକଙ୍କ ଉପରେ ଗୁଳି । ଶ୍ରାବଣମାସର ତାଳ ପରି ମଣିଷ ଗୁଡ଼ାକ ଟୋ ଟା ଗଡ଼ି ପଡ଼ିଲେ । ସେ ଦୃଶ୍ୟ ଦେଖି କାମଦେବର ଛାତି ଫାଟି ଯାଇନାହିଁ । ସେ ମୃତ୍ୟୁ ଦେଖି ବି ସେ ଦେହ ଧରି ରହିଛି । ଧୀର ସ୍ଥିର ଭାବରେ ପୁଲିସ ପହରାରେ ଆସି ଜେଲ୍‌ରେ ଦିବ୍ୟ ଅନ୍ନଗ୍ରାସ କରୁଚି । କେତେ ମା, ବାପ ଅପୁତ୍ରିକ ହେଲେ । କେତେ ସ୍ତ୍ରୀ ବିଧବା ହେଲେ । କେତେ ଅବୋଧ ଶିଶୁ ନିରକ୍ଷ ହୋଇଗଲେ କିନ୍ତୁ ତାର ହେଇଚି କ'ଣ ? କିଛି ନା । ମନେ ହେଉଚି ସେଇ ଯେମିତି ଏଡ଼େବଡ଼ କାଣ୍ଡଟାଏ କରି ଏଠି ଆସି ଚୁପ୍ କରି ବସିଯାଇଛି । ଅନୁତାପରେ ତା' ହୃଦ ଜଳି ଯାଉଥାଏ । ନିଶ୍ୱାସ ରୁଦ୍ଧ ହେଇ ଯାଉଥାଏ । ଏତେ ଲୋକଙ୍କୁ ଗୁଳି ମୁହଁରେ ଦେଇ ସେ ଜୀଇଁଚି—ଜୀଇଚି—ମରି ପାରିନାହିଁ । ଇଚ୍ଛା କରିଥିଲେ ସେ ମରି ପାରିଥାନ୍ତା । କାରଣ ଜୀଇବାର ଅଧିକାର ଏ ଦେଶବାସୀ-ଙ୍କର ନଥାଇ ପାରେ କିନ୍ତୁ ମରିବାର ଅଧିକାର ତ ଅଛି । ସେ ଅଧିକାର କିଏ କାହାଠୁ ଛଡ଼ାଇ ନେଇପାରେ ନାହିଁ । ତଥାପି ସେ ନମରି ବଞ୍ଚିଛି । ସେ ନିଜେ ନିଜର ଅଧିକାରକୁ ହାସଲ କରିପାରି ନାହିଁ । କାହିଁକି ? ସେ କ'ଣ ଡରୁଛି ? ହଁ ଡରୁଛି । ଡର ନୁହେଁତ

ଆଉ କ'ଣ ? ମରିବାକୁ ସେ ଡରନ୍ତି—ଛି ଛି, ସେ ମରିଯାଉ ନାହାଁ କାହିଁକି—ତା ଛାତି ଫାଟି ଯାଉନାହିଁ କିଆଁ ? କାମଦେବ କାନ୍ଦ ପକାଏ ।

ବାପ ମାଙ୍କ କଥା ତାର ମନେପଡ଼େ ।

୪୩-୪୪-୪୫ । ତିନିବର୍ଷ । ଦୀର୍ଘ ତିନିବର୍ଷ । ପୃଥିବୀର ଜନ ଯୁଦ୍ଧ—ଜନତାର ଲଢ଼ାଇ ସରିଯାଇଛି । ପୃଥିବୀମୟ ସବୁ ଜାତି ସବୁ ସମ୍ପ୍ରଦାୟର ସ୍ୱାଧୀନତା ସଂଗ୍ରାମ ସରିଯାଇଛି । ସ୍ୱାଧୀନତାର ନାମରେ କେତେଲୋକ ମରିଚନ୍ତି—କେତେ ଲୋକ ମାରିଛନ୍ତି— ହତ୍ୟା କରିଚନ୍ତି । ତା'ପରେ ଯାଇ ଆଜି ବିଜୟ ବାନା ଉଡ଼ୁଛି । ସ୍ୱାଧୀନତାର ବିଜୟ ବାନା ! ମିଳିତ ଜାତିର ବିଜୟରେ ସ୍ୱାଧୀନତାର ବିଜୟ ହୋଇଚି ।

କିନ୍ତୁ ୧୯୪୨ରେ, ଏଇ ଭାରତ ଭୂଇଁ ଉପରେ ଯେଉଁ ଗରିବ ମଲାମୁଣ୍ଡିଆ ନିରସ୍ତ୍ର ଲୋକଗୁଡ଼ିକ ଗୁଳି ମୁହଁରେ ମଲେ, ତାଙ୍କ ରକ୍ତ କିଛି କାମରେ ଲାଗିନାହିଁ । ଖାଲି କୁକୁର ଶିଆଳ ଗୁଡ଼ିକ ଚାଟିଚନ୍ତି । ୧୯୪୩ ଦୁର୍ଭିକ୍ଷରେ ଯେଉଁ ଲକ୍ଷ ଲକ୍ଷ ଲୋକ ମଶା ମାଛି ପରି ମରିଗଲେ, ସେ କାହାପାଇଁ ମଲେ, କାହିଁକି ମଲେ ତାଙ୍କୁ କେହି କିଛି କହୁନାହିଁ । ତାଙ୍କ ମଡ଼ା କେବଳ ଗୃଧ୍ର ଶିଆଳଙ୍କ କଳିଭେଇ ଯାଇଛି, ସ୍ୱାଧୀନତା ଆଣିନାହିଁ । ଜେଲ ଭିତରେ ବାରବାର ଅନଶନ କରି ଯେଉଁ ରକ୍ତ ସେ ଶୁଖାଇଚି ତାକୁ ପିଇଚି ଏଇ କାନ୍ଥର ପ୍ରାଚୀର । ୧୯୪୪ ସ୍ୱାଧୀନତା ଦିବସରେ ପ୍ରତିଜ୍ଞା ପାଠ କଲାବେଳେ ଯେଉଁ ଲାଠି ମାଡ଼ରେ ତା' ମୁଣ୍ଡ ଫାଟିଥିଲା ସେ ମାଡ଼ର ଦାଗ ଅବାଧିତା ଦୁଷ୍ଟାମି ବେଆଇନ ଅମାନ୍ୟର ଅପରାଧ ବୋଲି ମାର୍କା ମରା ହୋଇଥିଲା ରହିଯାଇଛି । ତା' ଫଳରେ କୌଣସି ମୁଲକରେ

କୌଣସି ଲୋକର କୌଣସି ଉପକାର ହେଉନାହିଁ—ସ୍ୱାଧୀନତା ତ ବହୁ ଦୂରର କଥା । ଆଜି ୧୯୪୫ରେ ବ୍ରିଟିଶ ସରକାର ତାଙ୍କୁ ଜେଲରୁ ଖଲାସ କରି ଦେଉଛନ୍ତି ଦୟାରେ । ପୃଥିବୀର ସ୍ୱାଧୀନତା ସଂଗ୍ରାମରେ ବ୍ରିଟିଶ ସରକାରର ବିଜୟ ହୋଇଛି, ସେଥିପାଇଁ ଅନେକ ରାଜବନ୍ଦୀଙ୍କ ସାଙ୍ଗରେ କାମଦେବ ବି ଛୁଟି ପାଉଛି, କିନ୍ତୁ ସବୁ ରାଜବନ୍ଦୀ ଛୁଟି ପାଉନାହାନ୍ତି । ଲଜ୍ଜାରେ କାମଦେବର ମୁହଁ ତଳକୁ ହୋଇଗଲା । ସେ କ'ଣ ଏଡ଼େ ନୀଚ ! ଶତ୍ରୁର ଦୟା ଅନୁକମ୍ପାକୁ ଗ୍ରହଣ କରି ସେ ବଞ୍ଚି ରହିପାରେ ? ଯେଉଁ ନିରୀହ ଲୋକଗୁଡ଼ିକଙ୍କୁ ବ୍ୟର୍ଥ ଅଗଷ୍ଟ ଆନ୍ଦୋଳନରେ ମରେଇ ଦେଇଛି ସେ—ଏ କ'ଣ ତାଙ୍କର ଅଭିଶାପ !

ଜେଲରୁ ବାହାରି ସେ ଘରକୁ ଯିବ । ବାପା ବୋଉଙ୍କ କଥା ତାର ମନେ ପଡ଼ିଲା । ଜେଲରେ ବି ଅନେକଥର ମନେ ପଡୁଥିଲା । ମଝିରେ ମଝିରେ ସରକାର ଦୟା କରି ଘଣ୍ଟେ ଅଧେ ଛୁଟି ବି ବାପା ବୋଉଙ୍କ ପାଖରୁ ଆସିଥିବା ଚିଠି ମନେ ପକାଇବାର ସୁଯୋଗ ଦେଇଥିଲେ । ଆଜି ସେ ତାଙ୍କର—ସେଇ ବାପା ବୋଉଙ୍କ ପାଖକୁ ଯାଉଛି । କିନ୍ତୁ ଅଗଷ୍ଟ ନଅ ତାରିଖ—ଯେଉଁଦିନ ଭାରତର ଇତିହାସକୁ ଭାରତର ଭବିଷ୍ୟତ ନୂଆ କଲମ ନୂଆ କାଳିରେ ଲେଖି ବସିଥିଲା, ସେଦିନ ରାତିରେ ତାର ବାପା ବୋଉ କ'ଣ କଥାଭାଷା ହେଉଥିଲେ ତାର ଇତିହାସ ଆଜି ଲେଖିବାର ନୁହେଁ—ସେ ଭୁଲିଗଲାଣି ସେ କଥା । ମନେ ପକେଇବାର ଆବଶ୍ୟକତା ମଧ୍ୟ ନାହିଁ ।

କାମଦେବ ଘରକୁ ଫେରି ଆସିଲା । ଘରେ ସମସ୍ତେ ଅଛନ୍ତି—ବାପା, ବୋଉ, ମୁକୁଳା—ସମସ୍ତେ । କେହି ମରି ହଜି ଯାଇନାହାନ୍ତି ।

ଓସ ଯେମିତି ମରି ହଜି ଯାଇନାହିଁ ସେମିତି । ମନ୍ୱନ୍ତର ଖାଲି ମଲା ମୁଣ୍ଡିଆ ଗରିବ ଚାଷୀ—କେବଳ ଅଗଷ୍ଟ ମାସର ପୁଲିସ ଗୁଳିରେ ନୁହେଁ, ମାରି ମଡ଼କରେ ନୁହେଁ—ଅନାହାରରେ ଅନାଚ୍ଛାଦନରେ । ସେ କାନ୍ଦ ପକାଇଲା । ବାପା ବୋଉ କାନ୍ଦୁଥିଲେ । ସେଥିପାଇଁ ସେ କାନ୍ଦ ନାହିଁ । କାରଣ ବାପା ବୋଉଙ୍କର କାନ୍ଦଣାରେ ଥିଲା ଫେର ପାଇବାର ଆନନ୍ଦ ଆଉ ତା ପ୍ରାଣ ଭିତରେ ଥିଲା କୁ ଗୋଟାଏ ଦାମିକା ଚିଜ ହରାଇବାର ଦୁଃଖ ।

ଅବସର ସମୟରେ କାମଦେବର ଭଉଣୀ ମୃଦୁଳା ଅସି ପାଖରେ ବସିଲା । କହିଲା ଭାଇ—"ସରଳା କଥା ମନେ ଅଛି ?"

"ସରଳା ?—ନା ସର ? ଯା ଭାଇ ଗୁଳି ଖାଇ ମରିଥିଲା ? ସେ ବି ତ ଖାଇବାକୁ ନପାଇ '୪୩ ଦୁର୍ଭିକ୍ଷରେ ମରିଯାଇଛି । ହଁ, ମୁଁ ଖବର କାଗଜରେ ପଢ଼ିଥିଲି । ବଡ଼ କଷ୍ଟ ହେଲା ମୋର । ତା'ର କଥା କହୁଛୁ ତ ?"

"ନା—ନା—ବୃନ୍ଦାବନବାବୁଙ୍କ ଝିଅ ସରଳା ମ ! ମନେ ନାହିଁ ? ବୋଉ ମନ କରିଥିଲା ତାକୁ ଆମର ନୂଆବୋଉ କରିବା-ପାଇଁ । 'ବାପା କଥା ଦେଇଥିଲେ—"

୧୯୪୨ ନଅତାରିଖ ରାତି । ବାପା ବୋଉ କଥା ହେଉଥିଲେ କାମଦେବର ମନେ ପଡ଼ିଲା—ଛାଇ ଛାଇ ପରି ।

"ତମେ ଜେଲ ଚାଲିଗଲ—ପଢ଼ାପଢ଼ି ଛାଡ଼ିଦେଲ । ସେଥିପାଇଁ ବୃନ୍ଦାବନବାବୁ ସରଳାକୁ ଆଉଠି ବାହା ଦେଇଦେଲେ । ଆଉ କେତେଦିନ ବାଡ଼ୁଅ ଝିଅ ଘରେ ରଖନ୍ତେ ? ଜାଣିଚ, ସରଳା ବାହା ହେଇଚି ଗୋଟେ ମିଲ୍‌ଠାସ୍ତିକ । କିନ୍ତୁ ସରଳାର ମନ ନଥିଲା ।

ବାହାଘରକୁ ଆମେ ତାଙ୍କ ଘରକୁ ଯାଇଥିଲୁ । ସରଳା ବୋଉକୁ ଧରି ଯେତେ ବାହୁନିଲା ।”

କାମଦେବ ହସିଲା ।

ଭାବିଲା—କାନ୍ଦିବାଟା ଭାରି ସହଜ । ହଁ, ସେଦିନ ବି ସେଇ ନିରୀହ ଲୋକଗୁଡିକ ପାଇଁ କାନ୍ଦିଥିଲା । କିନ୍ତୁ ହେଲା କ’ଣ ? କାନ୍ଦି ସେ କରିଛି କ’ଣ ? ଅନ୍ୟ ଲୋକଙ୍କୁ ମରେଇ ଦେଇ ସେ ନିଜେ ବଞ୍ଚିଛି । ଯେଉଁମାନେ ତାର ଆଗରେ ତାରି ପାଇଁ ପ୍ରାଣ ଦେଲେ, ସେ ତାଙ୍କ ପାଇଁ ମରି ପାରିନାହିଁ—କାନ୍ଦି କାନ୍ଦି ତା ଛାତି ଫାଟିଗଲା ନାହିଁ, କାନ୍ଦିବା ତାର ଛଳନା, ଆତ୍ମ ପ୍ରତାରଣା, ଆତ୍ମ ସାନ୍ତ୍ୱନା ।

ସରଳା ବି କାନ୍ଦି କାନ୍ଦି ବାହାହେଇ ଯାଇଛି—ଅନ୍ୟ ଜଣକୁ ।

# ରଜା କଥା

"ଗୋଟିଏ ଥିଲା ରଜା !"

"ଆଉ ଗୋଟିଏ ଥିଲା ତାର ରାଣୀ" ବିନୋଦ କହିଲା ।

"ଉହୁଁ—ଆଉ ଗୋଟିଏ ଥିଲା ତାର କୁଣ୍ଢେଇ ।"

"ତା ପରେ ?" ଏଥର ବିନୋଦର କଥା ଶୁଣିବାକୁ ମନ ଲାଗିଲା ।

"ଦେଖିଲୁ ବିନୋଦ ? ଜଗତରେ ଯାହା ନିହାତି ସାଧାରଣ, ହବୁଦନେ ଦେଖନ୍ତିନି କେବଳ ସେତକ ଉପରେ ଥୋଇଦେଲେ କଳା ହୁଏନାହିଁ । ଯଉଁଠା ଅତି ସାଧାରଣ—ଅସାଧାରଣ କହିବ ? ସେଇଠା କଳା ।"

"ଚୁପ୍ ଚୁପ୍, ପୁଣି ତୋର ପାଗଳାମି ବାହାରିଲା ।"

"ପାଗଳ ଦୁନିଆରେ ଯଦି ଗୋଟାଏ ଲୋକ ଭଲ ବାହାରେ ତେବେ ତାକୁଇ କହିବେ ପାଗଳ ।"

"ରକ୍ଷାକର ବାବା ତୋ ଦର୍ଶନ ବାଜିରୁ—ଗପଟା ଆରମ୍ଭ କର୍‌ଦେ ।" ବିନୋଦ ବିରକ୍ତ ହେଲା ।

"ଅଚ୍ଛା ଶୁଣ୍ । କୁଣ୍ଢେଇଟି ଥାଏ, କାଚ ଡବ୍ବାଇ ଭିତରେ । କେତେ ସାଜ ସଜା, କେତେ ଗହଣା, ଅତର ସାବୁନ, ତୁଲା ପାଉଡ଼ର । ଆଧୁନିକ ରଜାର ଆଧୁନିକ କୁଣ୍ଢେଇ । ଅଚ୍ଛା ଧର, ସେ ପୁରାକାଳର ରଜା—କୁଣ୍ଢେଇ ପାଖରେ ଗନ୍ଧ-ଚନ୍ଦନ-ଚୁଆ ଅଗୁରୁ ଧୂପ ଦୀପ ଇତ୍ୟାଦି ଇତ୍ୟାଦି ।"

"କଉଁଠା ପୁଣି ଠିକ୍ ?" ବିନୋଦ ପଚାରିଲା—"ପୁରୁଣା କାଳିଆ ନା ଆଧୁନିକା ।"

"ତୁ ତାହେଲେ ନଶୁଣା । କଲାର ଏଇ ବାହାର ପୋଷାକଟାକୁ ଯେ ଦେଖେ ସେ କଳା ବୁଝେନାହିଁ । ତୋତେ କହି କିଛି ଲାଭ ନାହିଁ । ପୁରୁଣା ଆଉ ଆଧୁନିକ ଭିତରେ ବାହାରର ପୋଷାକ ଛଡ଼ା ଆଉ କ'ଣ ତଫାତ୍ ମୋତେ କହିଲୁ ।"

"ମୁଁ ତୋର ଏକଥା ଗ୍ରହଣ କରିପାରିବି ନାହିଁ । ବିନୋଦ ପ୍ରତିବାଦ କଲା । ଆଧୁନିକତା ଅର୍ଥ ପ୍ରକୃତି ଉପରେ ମନୁଷ୍ୟର ବିଜୟ ଆଧୁନିକ ପୋଷାକ ତାର ଜୟ ପତାକା—ଆଧୁନିକ ପ୍ରସାଧନ ତାର ବିଜୟ ଟୀକା ।"

"ଯଦି ସେଇଠାଇ ରାଜା ରାଣୀ ଭିତରେ, ପୁରୁଷ ନାରୀ ଭିତରେ ଯେଉଁ ସମ୍ପର୍କ ତାକୁ ଠିକ୍ କରେ, ଭଲ ପାଇବାର ମାପକାଠି ଯଦି ସେଇ ତେବେ ବୁଝିନେବା ଉଚିତ ଯେ, ରଜା ରାଣୀ ଆଧୁନିକ ଥିଲେ ରାଣୀ ନଥିଲେ—ଥିଲା ଗୋଟେ ସଖି କୁଣ୍ଢେଇ ।"

"ତୁ କହିବାକୁ ଚାହୁଁ ଆଧୁନିକ ସ୍ତ୍ରୀ ମାନେ ସଖି କୁଣ୍ଢେଇ ? ବରଂ—"

"ଠିକ୍ । ବରଂ ପୁରୁଣା ଝିଅ ବହୂ ଥିଲେ ସଖି କୁଣ୍ଢେଇ । ତଫାତ୍ ଏତିକି, ଆଗେ ସେମାନେ ସ୍ୱାମୀ ହାତରେ ନିଜକୁ ସାଜୁଥିଲେ ଆଉ ଆଜି କାଲି ଆଧୁନିକା ନିଜ ହାତରେ ନିଜକୁ ସାଜୁଚନ୍ତି ।"

"ତାହେଲେ ବି ଟିକିଏ ସ୍ୱାଧୀନତା ତ ମିଳିଲା ।" ବିନୋଦ କହିଲା ।

"ହଁ କାରଣ, ସେତେବେଳେ ଗୋଟିଙ୍କର ମନ ନେବାକୁ ପଡ଼ୁଥିଲା—ଆଉ ଆଜିକାଲି ଅନେକଙ୍କର ମନ ନେବାକୁ ପଡ଼ୁଛି।"

ବିନୋଦ ଜବାବ ଆଉ ପାଇଲା ନାହିଁ । କ'ଣ ଭାବିଲା ।

ବିନୋଦ ବିଭା ହୋଇଛି । ହୋଇଛି—ଧରାଯାଉ, ବିନୋଦିନୀକୁ ଆଧୁନିକା । ପ୍ରେମ ବିବାହ । ଅର୍ଥାତ୍ ବିଭା ପୂର୍ବରୁ ବି ପ୍ରେମ ଥିଲା । ତାର ଗର୍ବ ସେ ନୂଆ ଧରଣର ବିଭା କରିଛି । ବାପା ମା କେହି ରାଜି ନଥିଲେ । ତଥାପି ସେ ବିଭା ହୋଇଛି । ବିଭା ହେବା ଠାର ଗୌରବକୁ ଶିଖର ଉପରେ ଥୋଇ ଦେଇଛି ।

"ବିନୋଦ, କ'ଣ ହେଲା ଜାଣୁ ? ଦିନେ ହଠାତ୍ ରଜା ସକାଳୁ ଉଠି ଦେଖିଲେ—ତାଙ୍କ କୁଣ୍ଢେଇଟି ଆଉ କାଚ କୁଣ୍ଢେଇରେ ନାହିଁ । ଖୋଜା ପଡ଼ିଲା । ଦେଖି ଦେଖି, ଦେଖାଗଲା ରଜାଙ୍କ ଘୋଡ଼ା ସଇସ ବି ନାହିଁ ।"

"ଯାଃ ଅସମ୍ଭବ—ଅସମ୍ଭବ !" ବିନୋଦ ବିରକ୍ତ ହୋଇ ଉଠି ଚାଲିଗଲା ।

ଦିନ ଚାଲିଗଲା—ଦିନ ତ ଯାଏ—ଯିବାର କଥା ଗଲା । ଏ ଭିତରେ ବିନୋଦିନୀ ବି ଚାଲି ଯାଇଛନ୍ତି । ବିନୋଦ ଗର୍ବ କରେ—"ବଡ଼ ଆନନ୍ଦର କଥା, ମୋ ସ୍ତ୍ରୀ ତାର ସ୍ୱାଧୀନ ମତ ବ୍ୟକ୍ତ କରି-ପାରିଲା । ଏଭଳି ସ୍ତ୍ରୀ ପାଇଥିଲି ବୋଲି ମୋର ଗର୍ବ ହେଉଛି—ମୋଠୁ ମନୋନୀତ ଥିଲା ସେ ।"

"ବିନୋଦ, ସେଦିନ ଗପଟା ସେଠୁ ଖଣ୍ଡିଆ ହୋଇଥିଲା—ଶୁଣ ।"

"କହ ।" ବିନୋଦ ବସିଲା ।

"କେଣ୍ଟେଇ କହୁଥିଲା—ସଇସରେ, ତୁ ମୋତେ ଥରେ ତୋ ପୋଷାକ ପିନ୍ଧାଇ ଦେଲୁ—ତୋ ଘରଣୀ ଯେମିତି ପିନ୍ଧେ । ମୋତେ ଏ ରଜାରାଣୀ ବେଶ ନାଇ ନାଇ ବଠା ଲାଗିଲାଣି ।"

ବନୋଦ ପୁଣି ରାଗିଗଲା । ଉଠି ପଳେଇଲା । ଦିନେ ହଠାତ୍ ବନୋଦ ଆସି ସଞ୍ଜବେଳର ଧୂଆଁଳିଆ ଅନ୍ଧାରରେ ଭୂତ ପରି ଠିଆ ହୋଇ ପଚାରିଲା—"ଭାଇ, ବନୋଦନୀ ଫେରି ଆସିଛି—ମୁଁ ତାକୁ ଗ୍ରହଣ କରିବି ?"

"ସେ ଗପଟା ଲେଖିଥିଲା—ଶୁଣା ।"

"ଅସମ୍ଭବ ଲୋକ ତୁ । କଥାର ଆଗ ଜବାବ୍ ଦେ ।"

"ତୁ ମୋପାଇଁ ଗୋଟେ କନିଆ କରିଦେଇ ପାରିବୁ ?"

"ତୁ ବାହାହବୁ ?" ବନୋଦ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"କି—ବାହା ହବାଟା କ'ଣ ତୋର ଏକଚାଟିଆ ।"

"ନା—ନା—ମୁଁ ପଚାରୁଛି—ତୁ ପରା ପଣ କରିଚୁ ବାହା ହବୁନାହିଁ ବୋଲି ?"

"ବାହା ହେବିନାହିଁ ବୋଲି ପଣ କରିନାହିଁ ତ—ଆଉ ଥରେ ବାହା ହେବି ନାହିଁ ବୋଲି ପଣ କରିଥିଲି !"

"ତୁ ବାହା ହେଇଚୁ ? କ'ଣ କହୁଚୁ ?"

"ବାଃ ଆଶ୍ଚର୍ଯ୍ୟ ହେଲୁ ଯେ ! ବୟସ ଆସି ଗୁଳାଣ ଧରିଲା । ବାହା ନହୋଇ ମଣିଷ ଏତେଦିନ ଯାଏ ରହି ପାରେ ?"

"ତୁ ତେବେ ବାହା ହେଇଚୁ ?" "ବାହା ହୋଇଥିଲି କହ ।"

"ସେ ତେବେ—" "ମରିନାହିଁ । ସେ ଏବେ ବି ବଞ୍ଚିଛି—ମୋ ଭିତରେ ସେ ଏବେ ବି ଜୀବନ୍ତ ।" "ତୋର ପୁଣି ସେ ଦର୍ଶନ ସେ କବିତା ବାହାରିଲା ।"

"ଦର୍ଶନ ତ ସବୁ । ବିନୋଦିନୀଙ୍କ, କଳ୍ପ ହେଉଛି ଗୋଟାଏ ଦର୍ଶନ—ବିନୋଦିନୀର ଅଦର୍ଶନ ଆଉ ଏକ ଦିଗରୁ ଦର୍ଶନ—ବିନୋଦିନୀର ପୁନଃ ପ୍ରବେଶ ପୁଣି ଏକ ନୂଆଦର୍ଶନ ।"

"ତୋର ଦର୍ଶନଟା କେଉଁଠି କହ !" ବିନୋଦ ମୁହଁରେ ହସ ଥିଲା । ବିନୋଦିନୀଙ୍କ ଫେରି ଆସିବାରେ ସେ ଖୁସି । ବିନୋଦ ଜଣେ ଖେଳୁଆଡ଼ । ହାରିଗଲେ ଦୁଃଖ ନାହିଁ । ଜିତିଲେ ଆନନ୍ଦ ଅଛି

"ମୋର ଅନ୍ତଃଦର୍ଶନ । ତୋର ବାହାର—। ସେଦିନ ସେ ସଇସ କହିଲା—ନା ରାଣୀ, ତମକୁ ମୁଁ ସଇସାଣୀ ବେଶ ପିନ୍ଧାଇପାରିବି ନାହିଁ । ତମେ ମୋ ମନର ରାଣୀ । ତମକୁ ରାଣୀ ବେଶ ପିନ୍ଧାଇବାକୁ ହେବ । ପିନ୍ଧ, ପିନ୍ଧ, ମୋ ରାଣୀଟି ! ତମେ ହେବ ରାଣୀ । ଆଉ ମୁଁ ତମର ଦାସୀ ।

"ତା'ପରେ—ତା'ପରେ—"

"କି ଏତେ ବ୍ୟାକୁଳ କାହିଁକି ? ବିନୋଦିନୀ ଫେରି ଆସିଛି, ନା ? ସେ ଲୁଣ୍ଠେଇ ବି ସଇସକୁ ଘୋଡ଼ା ପଲେଇ ଆସିଲା ।

"ରାଜା ତାକୁ ନେଲେ ?"

"କି, ତୁ ତ ପଚାରିଲୁ ନାହିଁ, ମୁଁ କାହାକୁ ବାହା ହେଇଛି ।"

"ହଁ ସତେ କାହାକୁ ବାହା ହୋଇଛୁ ?"

"ଯାହାକୁ ମୁଁ ପାଇ ନାହିଁ ।"

"ପୁଣି ସେଇ ଦର୍ଶନ ।"

"ଆରେ ପାଗଳା, ଯାହାକୁ ମଣିଷ ଭଲ ପାଏ, ସେ କ'ଣ ତାକୁ ଅଧିକାର କରିବାକୁ ଚାହେଁ ! ସେ ଭଲ ପାଇବା ପଦାର୍ଥକୁ

ଅପଣାର ସମ୍ପତ୍ତି କରିବାକୁ ଚାହେଁ ସେ ଆପଣା ସ୍ୱାର୍ଥକୁ ଭଲ ପାଏ, ଆପଣା ସମ୍ପତ୍ତିକି ପାଇବାରେ ତାର ଆନନ୍ଦ—ଯାହାକୁ ଭଲ ପାଏ ବୋଲି ସେ ଛଳନା କରେ ସେ ଲୋକଟି ତାର ଅସ୍ଥାବର ସ୍ୱାର୍ଥକୁ ଯତ୍ନମୁଦା ସିନ୍ଦୁକ, ସେ ବାହାଘରଟା ଛପା ଶିଲ୍‌କ ମୋହର ।”

“ତମେ ତେବେ ଆଜ ଗୋଟେ ବନ୍ଧା ହେବାକୁ କହୁଚ ଯେ।”

“କାରଣ ତାକୁ ବ ମୁଁ ଭଲ ପାଏ ।”

“ଭଲ ପାଇ ପୁଣି ବାନ୍ଧା ହବ କମିତ ?”

“ନିଶ୍ଚୟ ! ନହେବ କଅଁ ? ଟେନିସ୍ ରେକେଟ୍‌ଟାକୁ ମୁଁ କେତେ ଭଲ ନପାଏ କହିଲୁ ! ତୁ ନେଇ ଖେଳିଲେ ମୋର ଦୁଃଖ ହେବ । ଖେଳିସାରି ତୁ ଫେରେଇ ଦେଲେ ମୁଁ ତ ତାକୁ ଫିଙ୍ଗି ଦେବନାହିଁ ଆଉରି ଯତ୍ନରେ ରଖିବ ।”

“ତା ପରେ—?” ବିନୋଦ ବୋକାଙ୍କ ଭଳି ପଚାରିଲା ।

“ତା ପରେ ରାଜା ପୁଣି ସେ କୁଣ୍ଡେଇକି ରଖିଲେ ।”

“ବପିନ !” ବିନୋଦ ଡ଼ାକିଲା ।

“ମୁଁ ଆସେ ।” କହି ବପିନ ଧୀରେ ଧୀରେ ଚାଲିଗଲା । ବିନୋଦ ଆଉ ଡ଼ାକି ପାରିଲା ନାହିଁ ।

# କ୍ଷଣିକା

ସ୍ନେହର କ୍ଷଣିକା,

ସେଦିନ ମୁଁ ତମର ଚିଠି ବି ପଢ଼ିପାରିଲି ନାହିଁ । ସେଥି-ପାଇଁ ଆଜି ଏ ସମ୍ବୋଧନ । ଆକାଶରେ ମେଘ । ଘୋଟି ଆସିଲାଣି । ପୁଣି ବିଜୁଳି । ମୁଁ ଚମକି ପଡୁଛି ବେଳେ ବେଳେ । ଠିକ୍ ସେମିତି ଆସିଥିଲି । ସେଦିନ ବି ମୁଁ ଏମିତି ଚମକି ପଡ଼ିଥିଲି । ସେଦିନ ଆଉ ଆଜି ଭିତରେ ଏତିକି ତଫାତ୍—ଆଜି ମୁଁ ଜାଣୁଛି ଏ ବିଜୁଳି କ୍ଷଣିକ—ସେଥିପାଇଁ ଧରିବାକୁ ଇଚ୍ଛା ନାହିଁ—ସେଦିନ ମୁଁ ଜାଣିଥିଲେ ବି ଆଜିଯାଏ ଧରିବାର ଇଚ୍ଛା ମରିଯାଇ ନାହିଁ ମୋର—

କେତେବର୍ଷ ଗଲାଣି । ଦିନ ଦିନ ମାସ ମାସ ବର୍ଷ ବର୍ଷ ଗଡ଼ି ଯାଉଛି—ସବୁଦିନେ ଚିଠି ଦେବାକୁ ବସେ—କିନ୍ତୁ ଲେଖି ହୁଏନାହିଁ—କାହାକୁ ଲେଖିବି ?—କେଉଁଠିକି ଲେଖିବି ?—କ'ଣ ଲେଖିବି ?

ଆଜି ଏତେଦିନ ପରେ ଲେଖି ଆରମ୍ଭିଲି । ଏ ଚିଠି ଏକା-ବେଳେକେ ନୂଆ । ଏମିତି ଚିଠି ଦୁନିଆରେ କେହି କାହାକୁ ଲେଖି ନଥିବ । ଏଇଠାରେ ନୂତନତ୍ୱ ।

କେତେଥର ମୁଁ ଗାଡ଼ିରେ ଚଢ଼ିଲିଣି ଛାପରେ । ଗଣି ନାହିଁ । ଗଣି ହୁଅନ୍ତା ନାହିଁ । କିନ୍ତୁ ସେଥର ଗାଡ଼ି ଚଢ଼ା ଜୀବନରେ ସେଇ ଥରକ । ମନକରି ବେମାର ହୋଇ, ଚିକିତ୍ସା ପାଇଁ ଅନ୍ୟ ଜାଗାକୁ

ଯିବାର ହେଲେ ରେଲରେ ଚଢ଼ି, ତେବେ କ'ଣ ସେଦିନର ସେଇ ଗାଡ଼ିଚଢ଼ାଟା ଫେରି ଆସିବ ଜୀବନରେ ? ଦୈବାତ୍ ଯଦି ତମ ସାଙ୍ଗରେ ଦେଖା ବି ହୁଏ—ସେ କଭଳି ଦେଖା ହବ—ସେ ଦେଖାର ଅର୍ଥ କ'ଣ ହେବ—ଫଳ କ'ଣ ହେବ ।

ସର୍ଦ୍ଦି ଅନେକଥର ହେଉଛି । କାଶ ଅନେକଥର ମୋତେ ଅଣନିଶ୍ୱାସୀ କରୁଛି । ରାତି ରାତି ଜଗାଗରରେ ପାହି ଯାଉଛି—କାଶ ଦାଉରେ ଯେତେ ନୁହେଁ—ସେଇ ସ୍ମୃତିଟାର ଅତ୍ୟାଗ୍ରହରେ, ତାଠୁଁ ବେଶୀ । ଥକାରେ ନିଦ ହୁଏ ବେଳେ ବେଳେ—ଅଳ୍ପ ନିଦ । ସେ ନିଦରେ ସପନ ଆସେ—ସେ ସ୍ୱପ୍ନ ନୁହେଁ । ସେ ତ ସ୍ୱପ୍ନ ନଥିଲା—ସେ ସତ—ଜୀବନ୍ତ । ଆଜି ସିନା ମୋତେ ସପନପରି ଲାଗୁଛି ।

ଗୃହବର୍ଷ ନିର୍ଜନବାସ କାରାରେ ରହି ସଂସାର ଛଡ଼ା ହେଲାପରି ସେଦିନ ଦୁନିଆ ସାଙ୍ଗରେ ମୋର କେଉଁଠି ଅମେଳ ରହିଯାଉଛି; ସେଇତକ ବାରୁ ବାରୁ ଯେତେବେଳେ ମୋର ବେଳ କୁଳଉ ନଥିଲା ସେତେବେଳେ ତମେ ଆସିଥିଲ ମୋତେ କହି ଦେବାକୁ, 'ନିଜକୁ ସେମିତି ପରଖି କରି ହେବନାହିଁ—ଦୁନିଆ ସାଙ୍ଗରେ ମେଳ କଉଁଠି ଦେଖିବାକୁ ହେବ—ଅମେଳ ତ ଅନେକ ।'

ସେଇ ଦିନଠୁ ମୁଁ ସବୁଠି ନିଜକୁ ମେଳେଇ ଆସୁଛି—ସବୁଠି ବାହାର ପଡ଼ୁଛି ଅମେଳ । ତମେ ହୁଏତ ପାଖରେ ଥିଲେ ଅନ୍ୟ ପ୍ରକାର ଅଭିଜ୍ଞତା ହୁଅନ୍ତା ।

ଲୋକେ କହିବେ ତମ ପ୍ରତି ମୋର ଏହି ମାୟାଟା ବହୁଦିନ ବନ୍ଦୀ ଜୀବନରେ ମୁକ୍ତିର ଉଚ୍ଛୃଙ୍ଖଳତା । ମୁଁ ଜାଣେ, ବନ୍ଦୀ ଜୀବନରେ ଦୁଇଟି ନିର୍ମମତା ମୋତେ ବାସ୍ତବିକ୍ ବଡ଼ ବାଧେ । ସୃଷ୍ଟିର

ଦୁଇଟି କମଳାସ୍ତ୍ର, ହୃଦୟବାନ ବସ୍ତୁ ସେଠି ସବୁଦିନଙ୍କ ଅଭାବ । ଟୋଟିଏ ନାରୀ, ଅନ୍ୟଟି ଶିଶୁ । ତଥାପି ନାରୀ ମୂର୍ତ୍ତି ଦେଖିବାର ଲୁଚ୍ଚା କାମନା ଯେ ମୋର ଆଜ କେଉଁଠି ନଫିଟି ତମେଣ୍ଟି ପାଖରେ କାହିଁକି ମୁକ୍ତି ଲଭି କଲା ତା' କାରଣ ବୋଧହୁଏ ତମେଇ ଜାଣିଥିବ ।

ଆଜ ମୁଁ ଶୋଇଛି—ଆଜ ବି ମୋତେ କାଶ, ସର୍ଦ୍ଦି—ଟ୍ରେନ୍ ଚାଲିଛି । ମୁଁ ଏକୁଟିଆ । ପାଖରେ କେହି ନାହିଁ । ଚାକରଟି ସର-ଭେଣ୍ଟରେ ବସିଛି । ଦୁଇ ତିନ୍ ଷ୍ଟେସନ ପରେ ଥରେ ମୁହଁ ମାରି ଦେଇଯାଏ । ସେ ଯେତିକି ପଇସା ପାଏ ସେତିକ ତାର ଦେବାର କଥା । ତାଠୁ ସେ ଯାହା ବେଶୀ ଦିଏ ସେଥିପାଇଁ ତାଠାରେ ମୁଁ ଋଣୀ । ମୋପରି ରୋଗୀର ସେବା କରିବା ଅର୍ଥ ଜୀବନକୁ ସବୁ-ବେଳେ ପାଣି ଛଡ଼େଇ ଚାଲିବା । ସେ ଆଜ କେଉଁଠି ଚାକରି ବି କରି ପାରନ୍ତା ମୋତେ ଛାଡ଼ି । କିନ୍ତୁ କରିନାହିଁ । ଏତିକି ତାର ଦାନ । ତାର ସେତିକ ଦାନ ନେଇ ମୁଁ ସଂସାରରୁ ଚାଲିଯିବ ।

ସେଦିନ ସରକାର ମୋତେ ଜେଲରୁ ଛାଡ଼ିଦେଲେ ଭଲ ଜଳ ବାୟୁରେ ରହି ସୁସ୍ଥ ହେବାପାଇଁ । ମୁଁ ତ କହିଥିଲି ସେ କଥା ତମକୁ ? ମୁଁ ଭଲ ହୋଇ ବି ଗଲି । ଆଜ ବୋଧହୁଏ ଭଲ ହୋଇ ବୁଲୁଥାନ୍ତି, ଯଦି ସେଦିନ ସେଇ କ୍ଷଣିକ ଲାଗି ତମ ସାଙ୍ଗରେ ଦେଖା ହୋଇ ନଥାନ୍ତା ।

ଜାଣିଚ ?—ମା ଚାଲିଗଲେଣି ମୋ ଆଗରୁ, ସେଇ ଭଲ ଜଳବାୟୁକୁ—ଯେଉଁଠିକି 'ମୁଁ ଭଲ ହେବାପାଇଁ' ଯିବି ଏ ସଂସାର ଜେଲଖାନାରୁ ଖଲାସ ହୋଇ ।

ଦିନେ ମୁଁ ଶୋଇଥାଏ । ସେଦିନ ଗାଡ଼ିରେ ତମେ ମୋତେ ଯେମିତି ଶୋଇବାର ଦେଖିଥିଲି ଠିକ୍ ସେମିତି ମୁଁ ଶୋଇଥାଏ । ଚିତ୍ ହୋଇ । ନିଦ ଥାଏ ମୋ ଆଖିରେ । କିନ୍ତୁ ମୋରି ଚେତନା ରହିଁଥାଏ ଅଧ ଚେତାରେ । ମେଘ ଘୋଟି ଆସିଥାଏ । ପବନ ଟିକିଏ ଥଣ୍ଡା । ମୋ ଛାତିରୁ ଲୁଗା ବାହାରି ଯାଇଥାଏ । ହଁ ସେଇ ଛାତି । ଆଜି ବି ଅଛି ସେ ଛାତି । ଜଖମ୍ । ସେଠି ବଡ଼ ଜଖମ୍ । ଖାଲି କାଣି କାଣି । ଆଉ କିଛି ନୁହେଁ । ନା—ନା—ଆଉ କିଛି ନୁହେଁ ।

କିଏ ଆସି ଧୀରେ ଧୀରେ ମୋ ଛାତିରେ ଲୁଗା ଢାଙ୍କି ଦେଲା-ପରି ମନେ ହେଲା । ମୁଁ ଚମକି ପଡ଼ି ଡାକିଲି—ମା ! ଠିକ୍ ସେଦିନ ପରି ଚମକି ପଡ଼ିଲି ।

ମା କାହିଁ ? ବୋଧହୁଏ ସେହି ଖିଡ଼କି ବାଟେ ବଲପଣା ପବନଟାର ଦପ୍ପା ହୋଇଥିଲା—ତମରି ଦପ୍ପା ପରି ।

ସେଦିନ ମୁଁ ଭାରି କାନ୍ଦିଲି । ମନେ ହେଲା ସେଇ ଦିନଠୁ ଛାତିରେ ଏ ଜଖମଟା ରହିଯାଇଛି । ଛାଡୁନାହିଁ । ମଲେ ଛାଡ଼ିଯିବ ନାହିଁ ତ ?

ସେଦିନର ସେଇ ସ୍ୱପ୍ନଟାକୁଇ ବୋର୍ବୋର ଦେଖୁଅଛି—ନିଦରେ ନୁହେଁ—ଗୁହାନ୍ତ୍ରାରେ । ତମେ ଧୀରେ ଧୀରେ ଆସ । ତମର ବାପା ବୋଉ ଆଉ ଦୁଇଟି ବେଞ୍ଚରେ ଶୋଇଥାନ୍ତି । ମୁଁ ଜାଣି ନଥାଏ ରାତି ଗଭୀର ହୋଇଯାଏ । ରାତିର ଜୀବନ ଥିଲା ପରି ଗାଡ଼ିର ଧକ୍-ଧକ୍ଟା କେବଳ କାନକୁ କ୍ଲାନ୍ତ କରି ନିଦ ଆଣାଇ ଦେଉଛି । ଅଜାଣତରେ ଛାତିରୁ ଲୁଗା ବାହାରିଯାଉଛି । ତମେ ଧୀରେ ଧୀରେ ଉଠୁଛ । ଅତି ଆସ୍ତେ—ଖୁବ୍ ଆସ୍ତେ—କାଳେ ମୋ ନିଦ ଭାଙ୍ଗିଯିବ ଏଇ ଡରରେ, ଯେତେ ଧୀରେ ହୋଇପାରେ ଆସୁଛ—ଧୀରେ ଧୀରେ

ମୋ ଖୋଲା ଛାତିରେ ଚଦର ଖଣ୍ଡ ଢାଙ୍କି—ମୁଁ ଚମକି ପଡ଼ନ୍ତି । ମା ନୁହେଁ ତମେ—

ତମେ ଲାଜରେ ମରିଯାଉଚ । ସେଇଟିକ, ସେତିକ ଏମା ଜୀବନର ସମ୍ପଦ ।

ସେଦିନ ତମେ ଖୋଲା ଛାତି ଉପରେ ଲୁଗା ଢାଙ୍କି ଦେଇ ଯାଇଚ । ସେଠି ଆଜି ବଡ଼ ଜଖମ୍ । ମୁଁ ସେଠି ପଟି ବାନ୍ଧିଦେଲିଣି । ତାକୁ ଆଉ ଖୋଲି କେହି ଦେଖିବେ ନାହିଁ । ଦେଖିପାରିବେ ନାହିଁ କି ଦେଖିବାକୁ ଚାହିଁବେ ନାହିଁ କିଜାଣି ।

ଆଉ ଗୋଟାଏ ନିଦ ଆସୁଛି । ଓଃ, ସେଦିନ କି ଶାନ୍ତି । ତମେ ନଥିବ ? ହୁଏତ ଥିବ ଏଇ ଗୃହର ଚୌକାଠ । ମୁଁ ସେଦିନଟିରେ ଧୀରେ ଧୀରେ ଶୋଇ ପଡ଼ିବି ? ଗୃହର ଚୌକାଠ ମୋତେ ଚାହିଁବ । ହୁଏତ ଖାଲି ଗୋଟାଏ ଦୀର୍ଘଶ୍ୱାସ । ସେତିକରେ ଭାର ଦେଣା ସରିଗଲା । ସେ ଲୁଗାଟାକୁ ତମର ଚଙ୍ଗା ଛାତି ଉପରୁ ଆଜି ଟିକିଏ ଟାଣି ଆଣି ମୁହଁରେ ଢାଙ୍କି ଦେଇ ଚାଲିଯିବ । ସେଦିନ ମୁଁ ଆଉ ଚମକିବି ନାହିଁ ।

ଆକାଶରେ ହୁଏତ ମେଘ ଥିବ—ଥଣ୍ଡା ପବନ ଦେଉଥିବ ଆଉ ଏ କ୍ଷଣିକ ଜୀବନର କଳା ଧେନ କ୍ଷଣିକା ବିଜୁଳି ।

ତମ ବାପା କହୁଥିଲେ, ମା କହୁଥିଲେ—ସମସ୍ତେ କହୁଥିଲେ ଶଠି ଦେବାପାଇଁ । ମୁଁ ବିଶ୍ୱାସ କରିଥିଲି । କ୍ଷଣକର ଦେଖା ସେଇ ଉଭା ଭିତରେ । ସେଦିନ ସକାଳ ହେଲା ବେଳକୁ ଆମେ କେତେ ନିଜର ହୋଇ ଯାଇଥିଲେ ପରସ୍ପର । ଯେତେ ଚଞ୍ଚଳ ନିଜର ହୋଇ ପାରିଥିଲେ ସେତିକି ଚଞ୍ଚଳ ଭୁଲିଗଲ କି'ଣ ସମସ୍ତେ ?

—ଶିଖା—

ମନେ ପଡ଼େ ? ସାଙ୍ଗ ହୋଇ ଖାଇଥିଲେ—ତମେ ମୋତେ ନିଜ ହାତରେ—ଆଜି—ସେ କଥା ଲେଖି ହେଉ ନାହିଁ।

ତମର ଟେଲିଗ୍ରାମଟା ଆସିଲା। ତମେ ମୋ ଠିକଣାଟା ନେଲ। ପଚାରିଲ—ଚିଠି ଦେବରେ ? ମୁଁ କହିଲି—ସେ ତ ତମ ଉପରେ ନିର୍ଭର କରେ। ଲେଖିଥିଲ ତମେ ଆଗେ ଚିଠି ଦବ। ସେଇ ଠିକଣାରେ ମୁଁ ତମକୁ ଉତ୍ତର ଦେବି।

କିନ୍ତୁ ସେ ଚିଠି ଆସିଲା ନାହିଁ। ମୁଁ ମୋର ମନେ ମନେ ଯେଉଁ ଜବାବ ଦେଇଥିଲି ତାକୁଇ ପୂର୍ଣ୍ଣ କରୁଛି ଏଇ ଗାଡ଼ିରେ। ଗାଡ଼ି ଚାଲୁଛି। ଲେଖି ହେଉନାହିଁ। ଥରୁଛି ହାତଟା। ହଉ, ଥରୁ। କିଏ ଦେଖିବ ଯେ ଏ ଚିଠିକି। ଏଇତ ବିଶେଷତ୍ୱ ଏ ଚିଠିର। ଖାଲି ଲେଖିବା—ଦେବା—ଆଉ ଉତ୍ତର ପାଇବାର ଆଶା ନାହିଁ।

ତମେ ଓହ୍ଲାଇଗଲ। ମନେ ପଡ଼େ ! ଉଃ, ଆଉ ନା—ନା—ଆଜି।

ଏଟା ଏତେ ସାମାନ୍ୟ କଥାଟେ। ପ୍ରତିଦିନର କଥା। ତଥାପି—

ଏବେ କେବଳ ମୋର ଯିବାକୁ ବାକି ରହିଲା।

ତମର

ମୁଁ

---